ଅମୃତ ମୋହର ଛାପା ଦେଖି କ୍ରୟ କର ।

# ସମର ତରଙ୍ଗ ।

ସୁକବି ୰ ବ୍ରଜନାଥ ବଡ଼ଜେନା ବିରଚିତ

ଏବଂ

ଶ୍ରୀ ଦାମୋଦର ପଟ୍ଟନାୟକଙ୍କଦ୍ୱାରା ପ୍ରକାଶିତ ।





CUTTACK :
Printed by the Cuttack Printing Company, Ld.
1904.

ମୂଲ୍ୟ ଟ ୦ ୵୩ ମାତ୍ର ।

Digitized by srujanika@gmail.com

# ଉତ୍ସର୍ଗପତ୍ର ।

—॰—

ମାନ୍ୟବର ଅଶେଷ ଗୁଣାଲଂକୃତ ଶ୍ରୀଲ ଶ୍ରୀଯୁକ୍ତ ଶ୍ରୀମନ୍
ମହାରାଜା ଶ୍ରୀ ସୂରପ୍ରତାପ ମହୀନ୍ଦ୍ରବାହାଦୁର
ମହୋଦୟ ଉଦାର ଚରିତେଷୁ ।

ଶ୍ରୀମନ୍ ମହାରାଜ !

ଏହି ସମରତରଙ୍ଗରେ ଶ୍ରୀଶ୍ରୀମୁଙ୍କ ପୂର୍ବପୁରୁଷଙ୍କ କୀର୍ତ୍ତି ଓ ବୀରତ୍ୱ ବର୍ଣ୍ଣିତ ହୋଇଅଛି । ଦେଶ ବିଦେଶ ଇତିହାସ ପାଠ କଲେ ଜଣାଯାଏ ଯେ ଯେଉଁ ନରପତି ଯଶସ୍ୱୀ ହୋଇଥାନ୍ତି ସେହି ନରପତିଙ୍କ ସମୟରେ ସୁକବି ଜନ୍ମ ହୋଇ ସେ ସମୟର କୀର୍ତ୍ତି ସ୍ୱର୍ଣ୍ଣାକ୍ଷରରେ ଲେଖି ଯାଇଥାନ୍ତି । ସୁତରାଂ ପ୍ରବଳ ପ୍ରତାପାନ୍ୱିତ ଭୂପତି ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ସମୟରେ ସୁକବି ବ୍ରଜନାଥ ବଡ଼ଯେନା ଜନ୍ମଗ୍ରହଣ କରି ଢେଙ୍କାନାଳର ଓ ଉତ୍କଳର ଗୌରବ ଅମରଭାଷାରେ ରକ୍ଷା କରି ଯାଇଅଛନ୍ତି । ଏହେତୁ ଉତ୍କଳର ଭବିଷ୍ୟତ ଆଶା ଭରସା ସ୍ଥଳ ଶ୍ରୀଶ୍ରୀମୁ ଏହି ପୁସ୍ତକର ଉତ୍ସର୍ଗ ନିମନ୍ତେ ଏକମାତ୍ର ଉପଯୁକ୍ତ ସତ୍ପାତ୍ର ବିବେଚନାରେ ଏହାକୁ ମୁଁ ଶ୍ରୀଶ୍ରୀମୁଙ୍କ କରକମଳରେ ଅର୍ପଣ କଲି ।

ଢେଙ୍କାନାଳଗଡ଼
ମାର୍ଗଶିର ସଂକ୍ରାନ୍ତି

ବିନୟାବନତ
ଶ୍ରୀ ଦାମୋଦର ପଟ୍ଟନାୟକ ।

Digitized by srujanika@gmail.com

ବିଶେଷ ଦ୍ରଷ୍ଟବ୍ୟ ।

# ନିବେଦନ ।

ସମରତରଙ୍ଗ ଉତ୍କଳ-ସାହିତ୍ୟ ଭଣ୍ଡାରରେ ଗୋଟିଏ ବହୁମୂଲ୍ୟ ଉଜ୍ଜ୍ୱଳ ରତ୍ନ ଅଟେ । ଆଦିରସାତ୍ମକ ଉତ୍କଳ ସାହିତ୍ୟ କ୍ଷେତ୍ରରେ ବୀରରସାତ୍ମକ କବିତାପାଦପ ଅତି ଦୁର୍ଲ୍ଲଭ । ଅତି ପୂର୍ବକାଳରୁ ଏ ପର୍ଯ୍ୟନ୍ତ ଉତ୍କଳରେ ଯେତେ କବି ଜନ୍ମ ଗ୍ରହଣ କରିଅଛନ୍ତି ସେମାନଙ୍କ ମଧ୍ୟରେ କାହାଦ୍ୱାରା ସ୍ୱଦେଶୀୟ ଜାତୀୟ ବୀରତ୍ୱ ଓ ଗୌରବ ଝଙ୍କାରିତ ହେବାର ଦେଖାଯାଇ ନାହିଁ ମାତ୍ର ସମରତରଙ୍ଗର କବି ସେ ଅଭାବ ପୂରଣ କରି ଉତ୍କଳର ଟେକ ରକ୍ଷା କରିଅଛନ୍ତି । ସମରତରଙ୍ଗର କବି ଓଡ଼ିଶା ଅନ୍ତର୍ଗତ ଗଡ଼ଜାତ ମହାଲର ଢେଙ୍କାନାଳ କଟକ ନିବାସୀ ୰ ବ୍ରଜନାଥ ବଡ଼ଯେନା ଏବଂ ଢେଙ୍କାନାଳ ଗଡ଼ ଏହି ସମରତରଙ୍ଗର ଲୀଳାଭୂମି । ଗଡ଼ର ପଶ୍ଚିମ ଦିଗରେ କୁମ୍ଭୁଣିଆ ପର୍ବତର ପାଦଦେଶ-ଠାରୁ ତଳଗଡ଼ ଛତୁଁଣିଆ ସାହି ପର୍ଯ୍ୟନ୍ତ ଯେ ଶ୍ୟାମଳବର୍ଣ୍ଣ ଶସ୍ୟକ୍ଷେତ୍ର ଦେଖାଯାଏ ତାହାକୁ ଗୋଟିଏ ବାଡ଼ି ବୋଲି କହନ୍ତି । ଏହି ସ୍ଥାନରେ ମରହଟ୍ଟା ସୈନ୍ୟମାନେ ଛାଉଣୀ କରି ଲଢ଼ାଇ କରିଥିଲେ । ଢେଙ୍କାନା-ଳର ପ୍ରବଳପ୍ରତାପାନ୍ୱିତ ରାଜା ତ୍ରିଲୋଚନ ମହୀନ୍ଦ୍ରବାହାଦୂର ଖ୍ରୀଷ୍ଟାବ୍ଦ ସନ ୧୭୬୪ ଠାରୁ ୧୭୯୮ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ଓ ଏହାଙ୍କ ବୀରଦର୍ପରେ ସେ ସମୟରେ ନିକଟବର୍ତ୍ତୀ ରାଜ୍ୟମାନ କମ୍ପିତ ହେଉଥିଲା ଏବଂ ପୁଣ୍ୟର ମହାରାଜ ତାଙ୍କଠାରେ ଅତ୍ୟନ୍ତ ପ୍ରୀତ ହୋଇ ପୁରୁଷାନୁକ୍ରମେ ଭୋଗ କରିବାକୁ ମହୀନ୍ଦ୍ରବାହାଦୂର ପଦ ସନନ୍ଦ ପ୍ରଦାନ କରିଥିଲେ । ଏ ସମୟରେ ଢେଙ୍କାନାଳର ସୈନ୍ୟ ସଂଖ୍ୟା ଦଶସହସ୍ର ପାଏକ, ଅଠରଶତ ତେଲଙ୍ଗା ଏବଂ ପାଞ୍ଚଶତ ନାଗା ଥିଲେ । ମଲ୍ଲମାନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱ

Digitized by srujanika@gmail.com

କୁସ୍ତି କରିବା ଲାଗି ରାଜା ଅପଣା ପାଖରେ କେତେଜଣ ବିଦେଶୀ ମଲ୍ଲ ରଖିଥିଲେ । ଏ ସମୟକୁ ମରହଟ୍ଟାମାନଙ୍କର ଓଡ଼ିଶା ଅଧିକାର ଅଳ୍ପଦିନ ହୋଇଥିଲା ଏବଂ କଟକଠାରେ ରାଜାରାମ ପଣ୍ଡିତ ସୁବେ-ଦାର ଥିଲେ । ଢେଙ୍କାନାଳ ରାଜା ଅଧୀନତା ସ୍ୱୀକାର ନ କରି ପେଶକସ ଦେବାରେ ବିଳମ୍ବ କରିବାରୁ ରାଜାରାମ ସୈନ୍ୟସାମନ୍ତ ନେଇ ଢେଙ୍କାନାଳ ଅନ୍ତର୍ଗତ ମୋଟରି ଗ୍ରାମଠାରେ ଉପସ୍ଥିତ ହୁଅନ୍ତେ ସେଠାରେ ଯେ ଯୁଦ୍ଧ ହୋଇଥିଲା ତହିଁରେ ମରହଟ୍ଟାମାନେ ପରାସ୍ତ ହୋଇଥିଲେ ଏବଂ ରାଜସୈନ୍ୟମାନେ ଲୌହଧମସ ଓ ଚଢ଼କନାଳ ପ୍ରଭୃତି ଲୁଟି ଆଣିଥିଲେ ଅଧୁନା ଉକ୍ତ ଲୌହଧମସ ଓ ଚଢ଼କନାଳୀ ରାଜଅସ୍ତ୍ରାଗାରରେ ଦେଖାଯାଏ । ତହୁଁ ରାଜାରାମ ଅତ୍ୟନ୍ତ ଲଜ୍ଜିତ ହୋଇ ନାଗପୁରଠାରୁ ରାଜା ମାଧୋଜିଙ୍କ ସମୀପକୁ ସମ୍ବାଦ ପଠାନ୍ତେ ରାଜା ତାହାଙ୍କ ଭାଇ ଚେମନ ବାବୁଙ୍କ ସଙ୍ଗରେ ଅନେକ ସୈନ୍ୟ ଦେଇ ଅତି ସମାରୋହରେ ଢେଙ୍କାନାଳକୁ ପଠାଇଲେ । ଢେଙ୍କା-ନାଳ ଗଡ଼ଠାରେ କେତେକଦିନ ପର୍ଯ୍ୟନ୍ତ ଉଭୟପକ୍ଷର ଯୁଦ୍ଧ ହେଲା ଉତ୍ତାରୁ ଅବଶେଷରେ ସନ୍ଧି ସ୍ଥାପନ ହେଲା । ଯୁଦ୍ଧ ପରେ ମରହଟ୍ଟା ନୃପତି ଢେଙ୍କାନାଳର ବାର୍ଷିକ ପେଶକେସ ଷାଠିଏହଜାର କାହାଣରୁ ଅର୍ଦ୍ଧେକ ଛାଡ଼ିଦେଇଥିଲେ । ଏହି ଯୁଦ୍ଧ ସମୟରେ ଗଡ଼ର ଚତୁଃପାର୍ଶ୍ୱରେ ଯେ ଜଳ ତିଆର ହୋଇଥିଲା ତାହା ବର୍ତ୍ତମାନ ଅନେକ ସ୍ଥାନରେ ପୋତା ପଡ଼ିଅଛି ଏବଂ ଯେ ମୁରୁଚା ଓ ପଥରକାନ୍ଥ ଥିଲା ତାହା ଭଙ୍ଗାଯାଇ ତହିଁରେ ଥିବା ପଥରଦ୍ୱାରା ଜାଉଁଳ ପୋଖରୀ ନିକଟ ପୁରୁଣା ଇନ୍ସପେକ୍ସନ ବଙ୍ଗଳା ପ୍ରଭୃତି କୋଠାମାନ ନିର୍ମିତ ହୋଇଅଛି ।

କବି ତାଙ୍କର ପରିଚୟ ଓ ସେ ସମୟରେ ଗଡ଼ଜାତ ରାଜା ଓ ପାତ୍ର ( ଦେଓ୍ୱାନ ) ମାନଙ୍କର ରୀତିନୀତି ଶେଷ ଛାନ୍ଦରେ ଉଲ୍ଲେଖ କରି

Digitized by srujanika@gmail.com

ଅଛନ୍ତି । ଯୁଦ୍ଧ ଶେଷ ହେଲାପରେ କଣ୍ଟଦନ ଉତ୍ସାହରୁ କବି ତାଙ୍କ ରଚିତ ସମରତରଙ୍ଗ ପୁସ୍ତକ ଘେନି କଟକଠାକୁ ଆସି ସେଠାରେ ଥିବା ଟେମନ ବାବୁଙ୍କୁ ତାହା ଶୁଣାଇଥିଲେ । ଟେମନ ବାବୁ ସମରତରଙ୍ଗ ଶୁଣି ପ୍ରଥମେ ଅତ୍ୟନ୍ତ ପ୍ରୀତ ହୋଇ ଥିଲେ ମାତ୍ର ଦ୍ୱିତୀୟ ଛାନ୍ଦ ର ୨୦ ପଦ ଠାରେ ଯେଉଁଠାରେ ଟେମନ ବାବୁଙ୍କ ନାମ ଉଲ୍ଲେଖ କରି ଅପଣା ସୈନ୍ୟମାନଙ୍କୁ ଢେଙ୍କାନାଳ ରାଜା ଉତ୍ସାହ ପ୍ରଦାନ କରି କହୁଥିଲେ କି

"ବାନ୍ଧୁ ପଛେ ସେ ଫଟକା ବାନା
ଯେତେ ହୋଇଲେ ଲଢ଼ୁକା ସିନା
କଁଢ଼କା ରଖି କ କରିବ ନା
ମୂଳ ହେମତ ଯେ ।"

ସେହିଠାରେ ଟେମନ ବାବୁ ବିରକ୍ତ ହୋଇ ବହିକୁ ଫୋପାଡ଼ି ଦେଇ କହିଥିଲେ ଯେ ଆମ୍ଭେ ଲଢ଼ୁକା ହେଲେ କି ଆମ୍ଭ କୁଳମ ଲଢ଼ୁକା ?

ଧନ୍ୟ କବିବର ? ତୁମ୍ଭର ହେମତକୁ ଧନ୍ୟ ? ତୁମ୍ଭେ ଯେ ସାହ-ସୋତ୍ପୁଲ୍ଲ ହୃଦୟରେ ଶତ୍ରୁ ନିକଟରେ ତାହାର ଦୁର୍ବଳତା ଗାଇଛ ଏଥି ନିମନ୍ତେ ତୁମ୍ଭଙ୍କୁ ଶତବାର ଧନ୍ୟବାଦ ଦେଉଅଛୁଁ ।

ସମରତରଙ୍ଗର ଭାଷା କିପରି ସୁଲଳିତ ଓ ଉତ୍ତେଜକ, ଶବ୍ଦ ବିନ୍ୟାସ କିପରି ଗୋଟାକୁ ଗୋଟା ଗୁଳି ଫୁଟିଲା ପରି ଶବ୍ଦ ପଶି ହୃଦୟକୁ ଦାଉଁ ଦାଉଁ କରେ ଏବଂ ଭାବ କିପରି ହୃଦୟଗ୍ରାହୀ ତାହା ଭାବୁକ ପାଠକମାନେ ପଠନ କଲେ ଜାଣି ପାରିବେ । ସମରତରଙ୍ଗର ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଛାନ୍ଦ ଶୁଣି କିଏ ବୀର ରସରେ ଉତ୍ତେଜିତ ନ ହେବ ଏମନ୍ତ ଲୋକ ବିରଳ । ଏହି ତିନଗୋଟି ଛାନ୍ଦ ଉତ୍ତମ ରୂପେ ପଢ଼ିବାକୁ ଓ ଶୁଣିବାକୁ ଆମ୍ଭେ ସମସ୍ତଙ୍କୁ ଅନୁରୋଧ କରୁଅଛୁଁ

Digitized by srujanika@gmail.com

ଏବଂ ଉତ୍କଳର ଆଶା ଭରସା ସ୍ଥଳ ଯୁବକମାନଙ୍କୁ ଆଦରସାତ୍ମକ କଳିକାରୁ ଦୂରରେ ରଖିବା ନିମନ୍ତେ କିଶୋର ହୃଦୟରେ ସାଇରସର ଉଦ୍ଦୀପ୍ତ ହେବା ଲାଗି ସମସ୍ତ ଛାତ୍ରମାନଙ୍କୁ ଉକ୍ତ ଉନଗୋଟି ଗ୍ରନ୍ଥ କଣ୍ଠସ୍ଥ ରଖିବାକୁ ହୃଦକର ଜ୍ଞାନ କରୁଁ । କାରଣ କି ଏ ସଂସାରରେ କୌଣସି ସାଧୁ ଓ ମହତ କାର୍ଯ୍ୟ କରିବାକୁ ସାହସ ଆବଶ୍ୟକ ଏବଂ ଉତ୍ସାହ ହୀନ ହୋଇ ଆମ୍ଭେମାନେ ବରାବର ସୁଫଳ ଲାଭରୁ ବଞ୍ଚିତ ହେଉଅଛୁଁ । ଆମ୍ଭେ ଆଶା କରୁଁ ଯେ ଢେଙ୍କାନାଳର ଯୁବକ ବର୍ଣ୍ଣିତା ବୋଲି ଏ ପୁସ୍ତକ ଓଡ୍ରଷ୍ୟା ସାଧାରଣରେ ବ୍ୟବହାର ହେବା ପ୍ରତି କୌଣସି ବାଧାଜନକ ହେବ ନାହିଁ । କାରଣ କି ଗୋବର ଗଦାରେ ଗୋଲାପ ଫୁଲ ଫୁଟି ଥିଲେ ତାହାର ଅନାଦର କଦାପି ହୋଇ ନ ଥାଏ ବରଂ ଫୁଲର ଶୋଭା ଓ ସୁଗନ୍ଧ ହେତୁ ସମସ୍ତେ ଅଧିକ ମୁଗ୍ଧ ହୋଇ ଥାନ୍ତି ।

ଢେଙ୍କାନାଳ ଗଡ଼ }
ମାର୍ଗଶିର ସଂକ୍ରାନ୍ତି } ଶ୍ରୀଦାମୋଦର ପଟ୍ଟନାୟକ ।

Digitized by srujanika@gmail.com

# ସମରତରଙ୍ଗ ।



## ପ୍ରଥମ ଛାନ୍ଦ ।

### ରାଗ ରସକୋଇଲି ।

ଶ୍ରୀ ସିନ୍ଧୁସୁତାବରର ଚରଣକୁ ଚିନ୍ତି । କହୁଛି ଯାହା ଶୁଣ ହେ ସୁମତି ।
ଦକ୍ଷିଣସିନ୍ଧୁତଟେ ନିତ୍ୟ ଧାମ । ଯେଏବର ପୁରୁଷୋତ୍ତମ ନାମ ଯେ ।

ଯହିଁ ବିଜେ ଜଗନ୍ନାଥ ଯେ ।

ବଲଭଦ୍ର ଭଦ୍ରା ସୁଦରଶନ ଏ ଚାରି ମୂରତି ବ୍ୟକତ ଯେ । ୧ ।
ପତିତମାନଙ୍କୁ କରି ମୁକତି । ଉଡ଼ାଇ ପତିତପାବନ ନେତ ।
ପରମାନନ୍ଦ ସୁନ୍ଦର ସ୍ୱରୂପ । ଦରଶନେ ଦୂର କରନ୍ତି ତାପ ଯେ ।

କୃପାସିନ୍ଧୁ ଦୀନବନ୍ଧୁ ଯେ ।

ନିଖିଳ ମାନସ-କୁମୁଦ ଉଲ୍ଲାସ କରିବାକୁ ପୂର୍ଣ୍ଣଇନ୍ଦୁ ଯେ । ୨ ।
ଏହି ଯେଏବର ଉତ୍ତରଦଗରେ । ଢେଙ୍କାନାଲ ନାମେ ଅଛି ନଗରେ ।
ଧାତା କଲା ତା ଯତନେ ନିର୍ମାଣ । ଉପାରଦିକ ନ ଶିରୋଭୂଷଣ ଯେ ।

କି କହିବା ତାର ଠେକ ଯେ ।

ସୁଖ ବିନା ଦୁଃଖ କିରୂପେ ହୁଅଇ ନ ଜାଣନ୍ତି ତହିଁ ଲୋକ ଯେ ।୩।
ସିଂହ ବିଦ୍ୟାଧର ବୀରମଣ୍ଡନ । ଅଦ୍ୟରୁ ହେଲେ ସେ ରାଜ୍ୟେ ରାଜନ ।
ତାଙ୍କଠାରୁ ପ୍ରତି ପୁରୁଷେ ରାଜା । ଶୂର ପ୍ରତାପୀ ଦାତା ମହାତେଜା ଯେ ।

ବେଲକୁବେଲ ଗାଧିକ ଯେ ।

ଖଣ୍ଡାବଳେ କେତେ ଖଣ୍ଡାଇତଙ୍କର ଛଡ଼ାଇ ନେଲେ ମୁଲକ ଯେ ।୪।
ଏଥିରେ ନୃସିଂହ ଭ୍ରମରବର । ରାଜ୍ୟ ପୁଣି ଯଶ କଲେ ଅପାର ।
ତାହାଙ୍କ ନନ୍ଦନ କୁଞ୍ଜବିହାରୀ । ତାଙ୍କ ଗୁଣ ପୁଣି ବର୍ଣ୍ଣି ନ ପାରି ଯେ ।

Digitized by srujanika@gmail.com

ତୂର ସୁନ୍ଦର ରସିକ ଯେ ।

ଦାତା ଗୁଣବନ୍ତ କବି ଧର୍ମରତ ପ୍ରତାପବନ୍ତ ବିବେକ ଯେ । ୫ ।
ତାଙ୍କ ତନୁ ସିନ୍ଧୁ ଚନ୍ଦ୍ରମା ପ୍ରାୟ । ରାଜସିଂହ ଭ୍ରମରବର ରାୟ ।
ବ୍ରଜବିହାରି କାମ ସମ ରୂପ । ଆଶ୍ରିତଲୋକଙ୍କ କଳ୍ପପାଦପ ସେ ।
ସକଳ ଗୁଣେ ନିପୁଣ ଯେ ।

ଏଥି ଉତ୍ତାରୁ ଯେ ନୃପ ହୋଇଛନ୍ତି ତାଙ୍କ ଯଶ ଗୁଣ ଶୁଣ ଯେ । ୬ ।
ଯଦୁବଂଶରେ ଯଥା ପରୀକ୍ଷିତ । ପାଣ୍ଡବେ ଯୁଧିଷ୍ଠିର ଯେଉଁ ବିତ ।
ହିଂହ ବିଦ୍ୟାଧର କୁଳେ ତେମନ୍ତ । ଉଦୟ ମହା ଦୀପ୍ତି ସୂର୍ଯ୍ୟବତ ସେ
ତ୍ରିଲୋଚନ ନାମେ ଖ୍ୟାତ ଯେ ।

ରାଜା ମହୀନ୍ଦ୍ର ବାହାଦୁର ପଦ ଯା ସଂସାର ମଧ୍ୟେ ବିଦିତ ଯେ । ୭ ।
ଢେଙ୍କାନାଳ ମହୀଗଗନଶଶୀ । ଲକ୍ଷଣବନ୍ତ ଦୁଃଖତମ ନାଶି ।
କଳାକର ତାରା ଆନନ୍ଦକର । ଉଦେ ହୋଇ ରାଜେ ସର୍ବ ହୃଦର ସେ
ଉଜ୍ଜ୍ୱଳକଳା ପ୍ରକାଶେ ଯେ ।

ପଦ୍ମିନୀ ମୁଦ୍ରିତ ହୋଏ ଯା ଲୋକନେ ସୁରଗଣଙ୍କୁ ସେ ତୋଷେ ଯେ ॥
ଯାହାର କୀରତିକାନ୍ତି ପ୍ରବଳେ । ପରିପୂର୍ଣ୍ଣ ହୋଇ ମହୀମଣ୍ଡଳେ ।
ସ୍ଥାନ ନ ପାଇ ବାହାର ପଡ଼ିଲା । ଦଶଦିଗରେ ପରିପୂର୍ଣ୍ଣ ହେଲା ସେ ।
ତହିଁ ସ୍ଥାନ ହୋଏ ନାହିଁ ଯେ ।

ତାରାକୁଳ ଛଳେ ଠାବେ ଠାବେ ଏବେ ଆକାଶେ ଲୋଟନ୍ତି ଯାଇ ଯେ ॥
ପ୍ରଚଣ୍ଡ ବୀର ପ୍ରତାପ-ତପନ । ଶୁଖାଇଲା ଅରି-ଆନନ୍ଦମନ ।
ନୃପତିବଳ ଅନ୍ଧକାର ହର । ତେଜନ୍ତ ସକଳ ଭୁବନେ ପୂର ଯେ ।
ଦୁଷ୍ଟ କୁହୁଡ଼ି ନାଶିଲା ଯେ ।

ଅନୁଗତ ଲୋକ ସଜ୍ଜନକମଳକୁଳ ଶୋଭା ବିକାଶିଲା ଯେ । ୧୦ ।
ସେ ପ୍ରତାପ ବର୍ଣ୍ଣି ହୋଇବ ନାହିଁ । ସହସ୍ରେ କବି ନ ପାରିବେ କହି ।
ସିନ୍ଧୁବାଲି କେ କରିବ ପ୍ରମାଣ । ଆକାଶ କଳନା ହୋଏ କି ପୁଣ ଯେ

Digitized by srujanika@gmail.com

ତଥାପି କହୁବା କଛୁ ଯେ ।
ଏ ନୃପସିଂହ ଚରିତ୍ର ବର୍ଣ୍ଣିବାକୁ ଶରଧା ତ ବଳୁଅଛୁ ଯେ । ୧୧ ।
ବରଗି ଓଡ଼ିଶା କଲେ ଅମଲ । ସରବରା ଦେଉଥିଲେ ଭୂପାଳ ।
ବିହିଯୋଗେ ହେଲା ଅନବୁନାଉ । ରାଜାରାମ ଘୋଷା ବହିଲେ ତହୁଁ ସେ
ଫଉଜ କଷିଲେ କୋପେ ଯେ ।
ମଞ୍ଜୁ ଚଉଧୁରୀ ସଙ୍ଗତେ ବିଶ୍ବରି ବାହାର ହୋଇଲେ ଆପେ ଯେ ।୧୨।
ମୋଠରି ( ୧ ) ନିକଟେ ପଡିଲେ ବଳ । ଓଡ଼ଲ ପେଷିଲେ ଅବନୀପାଳ ।
କାହିଁ ପାଇଁ ପୃଥ୍ୱୀ ନାଶିବ ମୋର । ପଇସା ନେଇ ଫେରାଅ ଲସ୍କର ଯେ ।
ନ ଘେନ ତା ରାଜାରାମ ଯେ ।
ଦଗା ଦେବା ମନେ ଗୁପତେ ଅରଣ୍ୟେ ବାହାରିଲେ ବହି ତମ ଯେ ॥
ନୃପତ ଜାଣେ ସେ କୂଟବିଶ୍ବର । ଆଜ୍ଞା ଦେଲେ ଦେଖି ଯାଅ ଆମୂର ।
ରାଜାରାମ ପଣ୍ଡିତଙ୍କୁ ବାଟରେ । ସଙ୍ଖୋଳ ଆସ ମର୍ଯ୍ୟାଦା ବେଭାରେ ସେ ।
ହାକମ ଅଟନ୍ତି ସେହୁ ଯେ ।
ତାର ଗୁଳ ଦେଇ ଭେଟିବ ତାହାଙ୍କୁ ପାସୋରିବେ ନାହିଁ ଆଉ ଯେ ॥
ଆଜ୍ଞାପାଇ କଛୁ ଫଉଜ ଗଲେ । ରାଜାରାମଙ୍କୁ ଦରଶନ କଲେ ।
ଦଇବେ ସେତ ପଣ୍ଡିତ ଗୋସାଇଁ । ବହୁତମତେ ସେବା କଲେ ଯାଇଁ ସେ
କୋଶେ ଅନୁସର ଗଲେ ଯେ ।
କେତେ ଜମାଦାର ସେବାରେ ତାଙ୍କର ଠାବେ ଠାବେ ବସା କଲେ ଯେ ॥
ଅତ ଦୟାଳୁ ପଣ୍ଡିତସାହେବେ । ଚଉଧୁରୀ ବଡ଼ଲୋକ ଦଇବେ ।
ରାଜାଙ୍କ ଏ ଅନୁସରଣ ଘେନ । ଅତ ପରସନ୍ନ ହୋଇଲେ ବେନ ସେ
ଇନାମ ଦେଲେ ବହୁତ ଯେ ।
ଗାଡ଼ ଘୋଡ଼ା ଓଟ ପାଲଙ୍କି କନାଟ ତମ୍ବୁ ଶାଲ ବନାଉଁଛ ଯେ ।୧୩।
ଖରଡ଼ ସତରଞ୍ଜି ଖଟ ଭୂକ । ରେଜାଇ ଗାଲଚି ଶେଯ ମୃଦୂଳ ।
ଗଡୁଆ ଗଗରା କେତେ ବାସନ । କେତେ ଯାଚ ଦେଲେ ହୋଇ ପ୍ରସନ୍ନ

( ୧ ) ଢେଙ୍କାନାଳ ଗଡରୁ ମା ୨୪ ଇଲ ଦୂରରେ ଅବସ୍ଥିତ ।

Digitized by srujanika@gmail.com

ଗ୍ରାହକ ଅଟନ୍ତି ସେତ ଯେ ।

ଶୁଣି ତହିଁ ଅତି ତରଳ ଯାଇ ସେ ବୋଇଲେ କିଅ ସମସ୍ତ ଯେ ।୧୭।
ମାତଙ୍ଗ ଘଣ୍ଟା ଟମକ ନିଶାଣ । ଢାଲ ତରଓ୍ୱାର କଟାରି ପୁଣ ।
ସବୁ ଦେଇ ତେବେ ସନ୍ତୋଷ ନୋହି । ଜୀବନ ଯାଚ ଦେଲେ କେହି
କେହି ସେ ।

ତହିଁ କେଉଁ କେଉଁ ଜନ ଯେ ।

ଆନନ୍ଦେ ଦଗମ୍ବର ବେଶେ ଚଳଲେ ଦିକ୍ବାବାସ କର ଦାନ ଯେ ।୧୮।
ପଣ୍ଡିତ ସାହେବହିଁ ସବୁ ଦେଇ । କହିଲେ ଅନୁରୂପ ହେଲ ନାହିଁ ।
ପ୍ରାଣହିଁ ଦେଉଥିଲେ ପ୍ରୀତିବଶେ । ରାଜାଙ୍କ ଲୋକେ କହିଲେ ହରଷେ
ଏଥର ବିଜୟ କର ହେ ।

ଆଉ ଥରେ ଯେବେ ଦହି ମାଛ ହେବ ଏହା ଘେନିବୁ ନକର ହେ ॥
ତଉଧୁରୀ ବାବା ସନ୍ତୋଷ ହୋଇ । ଏହିରୂପରେ ସବୁ ଗଲେ ଦେଇ ।
ଯହିଁ ମୁଲକ ହୋଇଗଲେ ପାର । ସଂସାରଯାକରେ ପଡ଼ିଲା ହୁର ସେ ।
ଢେଙ୍କାନାଳ କରପଢ଼ ଯେ ।

ଯାଉଁ ଯାଉଁ ବାଟେ ଲୁଟିଲେ କପଟେ କଟକ ସାଙ୍ଗ ସମ୍ପତ୍ତି ଯେ ।୨୦।
ସହଜେତ ତାଙ୍କୁ ପଡ଼ିଲା ଦଣ୍ଡ । ଘାତୁଆ ଯିବାରେ ନ ଚଳେ ଦାଣ୍ଡ ।
ଗୋଟିଏତ କାହିଁ ନ ବାଜ କାଣ୍ଡ । ହଜାର ହଜାର ହୋଇଲେ ଖଣ୍ଡ ସେ
ଲେଉଟି ପଡ଼େ ସହର ଯେ ।

କାହା ସୁତ ବିର ଖୁଡୁତା କାହାର ମଲେ ଶଶୁର ଦେଅର ଯେ । ୨୧।
ସଂସାରେ ଅକୀର୍ତ୍ତି ହେବାରୁ ଘୋର । ସବୁ ତଲାସି ଦେଲେ ନରେଶ୍ୱର ।
ତଥାପି ତାଙ୍କ ମନ ସ୍ଥିର ନୁହେ । ଲୋକ ପେଷିଲେ ନାଗପୁରଯାଏ ସେ
ଏମନ୍ତ କଲେ ଅରଜ ଯେ ।

ଢେଙ୍କାନାଳ ରାଜା ପ୍ରବଳେ ତମାମ ଓଡ଼ିଶା ଯାଉଛି ଭାଙ୍ଗି ଯେ । ୨୨
ଯେଣୁ ଚଗୁଲି ନାନାମତେ କଲେ । ଅପେ ଚେମ୍ପଣା ବାବୁ ବାହାରିଲେ
ବାଟକୁ ରାଜାରାମ ମଞ୍ଜୁ ଯାଇ । ବୋଇଲେ ବଙ୍ଗଳା ଯାଅ କପାଁଇ ସେ

Digitized by srujanika@gmail.com

## ଚଳିଲକଟା ଢେଙ୍କାନାଳ ଯେ ।

ଏହା ସାଧି ଫିଡ ନ ଗଲେ କଟକ ଛାଡ଼ି ଯାଉଛୁଁ ସମ୍ଭାଳ ଯେ । ୧୩ ।
ସାରି ଫଉଜ ପକାଇଲେ ଆଣି । ମହାଭୟରେ କମ୍ପିଲା ଧରଣୀ ।
ପବନ ନ ଚଳ ହୋଇଲା ସ୍ଥିର । ଶୁଖିଲା ସରିତ ପିଅନ୍ତେ ନୀର ଯେ ।
ଅବାଟ ହୋଇଲା ବାଟ ଯେ ।

ଦଶଦିଗ ଧ୍ୱନି ପୂରିଲା ବାଜନ୍ତେ ବାଜା କରି କଣ୍ଡୁଘଣ୍ଟା ଯେ । ୧୪ ।
ବାରଦିନ ତାଙ୍କ ପଡ଼ିବା ଯେବେ । ତଳକୁ ଲଗି ଗଲାକ ମେଦିନୀ ।
ଅଟଇ ସେ ଅତି ନିଦାଘକାଳ । ଜଳ ନ ପାଇ ହୋଇଲେ ଆକୁଳ ସେ ।
ବାଜି ନ ପାଇଲେ ଚରି ଯେ ।

ବାଟରେ ଅନେକ ମରିଗଲେ ଲୋକ ସହି ନ ପାରିଲେ ଖରା ଯେ ॥
ଉପରମନେ ବନ୍ଦୋବସ୍ତ କରି । ଫଉଜ ଗଲେ କଟକ ବାହାରି ।
ପଇସାତ ସବୁ ମିଳିଲା ନାହିଁ । ଏଣୁ ଚେମଣାବାବୁ ରୋଷ ବହି ଯେ ।
ଜଳିଲେ ଅଗ୍ନି ପରାଏ ଯେ ।

ମଞ୍ଜୁ ରାଜାରାମଙ୍କର କ୍ରୋଧବାଣୀ ଘୃତ ତହିଁ ପଡୁଥାଏ ଯେ । ୧୬ ।
କ୍ରମେ ଶେଷ ହେଲା ବରଷାକାଳ । ପଥହିଁ ଚଳିଲା ଶୁଖନ୍ତେ ଜଳ ।
ଢେଙ୍କାନାଳକୁ ଧଣ୍ଡା ହେଲା ପାରି । ଫଉଜ ଆସିବେ ପଡ଼ିଲା ହୁରି ଯେ ।
ସାଜିଲେ ସବ ସମ୍ଭାର ଯେ ।

ଜନ ଜଦସ ଲାଲମେଖ ଦଉଡ଼ି ଗ୍ରିଦିମା କଢ଼ିଥିଲ ଯେ ।
ହାଉଦା ଅମାରି ଅଛୁ ସିକୁଳ । ଝୋପର ପଲାଞ୍ଚଆ ଘଣ୍ଟମାଳ ।
ଗାଡ ଶଗଡ଼ ଶଗଡ଼ ପଲାଣ । ଭାରି ସମ୍ଭାରି ସିନ୍ଧୁକହିଁ ପୁଣ ସେ ।
ଖଟ ଚଉକି ପାଲିଙ୍କି ଯେ ।

ତମ୍ବୁ କନାଟ ନାନାଜାତ ବିଛଣା ସମିଆନା ନୋହେ ଲେଖି ଯେ ।୧୭ ।
ତୋପ କମାଣ ତ୍ରିଶକଟ ଗୁଣ୍ଡି । ଜଜାଲ ଜମ୍ବୁରା ଜଳ ପ୍ରଚଣ୍ଡ ।
ପେଟକଟା ସାତହାତ ବନ୍ଧୁକ । ଗରନାଳବାଣ ସବୁହିଁ ଠେକ ଯେ ।

Digitized by srujanika@gmail.com

ଝକମକ ଲଗା ନଳ ଯେ ।
ଗାରଦଏ ଧରି ବାହାରିଲେ ଯହିଁ ବ୍ରହ୍ମାଣ୍ଡ ଦିଅନ୍ତି ଜାଳ ଯେ । ୨୯ ।
ତେଲଙ୍ଗା ବାହାର ଧରି ଢକୁଣ । ଯହିଁ ନ ଦିଶିଲା ସୂର୍ଯ୍ୟକିରଣ ।
ବାରଦ ଗୁଳ ଗୁଳା ଭାର ଭାର । ରଞ୍ଜକଯାତ୍ରୁକ ନାହିଁ ପଥର ଯେ ।
ବେଲାଦାନ ନାନା ସଜ ଯେ ।
ସବୁଜାତି ଭୁଲ ବନାଇଁ ବାହାର ହୋଇଲେ ବରକନ୍ଦାଜ ଯେ ।୩୦।
ଧସା ନାଗରା ନଉବତ୍ତ ଝଡ଼ । ଢୋଲ ଢେଙ୍କୁ ବାଜା ଶୃଙ୍ଗ ଗୁଡ଼ୁଗୁଡ଼ି ।
ଦମ୍ବଧବଳରେ ବଜାନ୍ତି ବାଦ୍ୟ । ନାମରଦ ଶୁଣି ହୋଏ ମରଦ ଯେ ।
ଭେଷ୍ଟ ରଣଶିଙ୍ଗା ଭୁରି ଯେ ।
କେହୁ ମୁହୁରଙ୍ଗ ରଙ୍ଗେ ବାଉଛନ୍ତି କେହୁ କରତାଳ ଧରି ଯେ ।୩୧
ମୁଦି ଦୋକାନୀ ଅଠାରି ବଜାରି । ପନରା ପନ୍ନାଅରା କେତେ ମେଳ ।
କାତରା ଶଗଡ଼ରେ ନୁହଇ କଳ । ଲକ୍ଷ ଲକ୍ଷ ଲଦାବଳଦ ଚଳ ଯେ ।
ମୋଚି ଚମାର କମାର ଯେ ।
କୋଟି କୋଟି ହୋଇ ଲୁଟି ଧାଁଇ ତହିଁ ଲୁଚ୍ଚ ଲୁଙ୍ଗୁରା ବାହାର ଯେ ॥
ଅଗାଡ଼ି ଲସକର ଚଳଗଲେ । ମହିମ୍ନେକେ ଅସି ଧଣ୍ଡା ଗାଡ଼ିଲେ ।
ରାଜାହିଁ ବାହାର ପଛେ ଦଇବେ । ଆର ଛନ୍ଦେ ଏହା ବର୍ଣ୍ଣିବା ଏବେ ।
ନୀଳାଚଳଚନ୍ଦ୍ର ଚନ୍ଦ୍ର ନଯ ।
କବି ବ୍ରଜନାଥ ବଡ଼ଯେନା ରସେ ଏ ଚରିତ ରଚୟନ୍ତି ଯେ । ୩୩ ।

---

ଦ୍ୱିତୀୟ ଛନ୍ଦ ।

ରାଗ ପାହାଡ଼ିଆକେଦାର ।

ସାରାଫଉଜ ହେଲେ ତୟ୍ୟାର ମୁସଦ୍ଦି ମୁସା ହେଲେ ବାହାର ପାଗା ସୁଆରଙ୍କ ଜମାଦାର କି ସରଦାର ଯେ । ଯେ ଯାହା ମୁରାତବ ସମ୍ଭାର ଦୌଲତ ଦେଇ ହେଲେ ହାଜର ମଜୁରା କରି ହୁକୁମ ପାଇ ଯାନ୍ତି ସହର ଯେ । କେହୁ ଚଢ଼ିଛି ତାଜିବାଜି ଉପର ଯେ । ରଙ୍ଗ-

Digitized by srujanika@gmail.com

ଅଙ୍ଗା ଅଙ୍ଗଙ୍କୁ ଦଶେ ସୁନ୍ଦର ଯେ । ତାଲେକ ପୂର୍ବ ବାମହାତରେ ଲାଲ କଷିଛନ୍ତି ଦକ୍ଷିଣ କରେ ଲାଲପଗଡ଼ି ଭଲ ମାନଛନ୍ତି ଟିରଙ୍କୁ ତାର ଯେ ॥ କେ ଅଛି ତାଜି ବାଜିକ ଚଢ଼ି ଧରି ନେଉଛନ୍ତି ଯୋଦ୍ଧାକ ଯୋଦ୍ଧା ଇଶାରା କଲେ ମସ୍ତାକ ଛାଡ଼ି ଯିବ ସେ ଉଡ଼ି ଯେ । କେହୁ ଭୁରୁକ ପିଠିରେ ବସି ଢାଲ ଧରିଛନ୍ତି ଧରିଛନ୍ତି କଷି କଣ୍ଠିରେ ନଶ ଦେଇଛନ୍ତି ଖୋସି ଲମ୍ବିଛନ୍ତି ଦାଢ଼ି ଯେ । କେହୁ ଶୁଆର ହେଇ ଅଣଆୟୃତ ଯେ । ଯେତେ ସମ୍ଭାଳିଲେ ସେ ନୋହେ ସ୍ଥିକତ ଯେ । ଫୁଫୁ ଶବଦ ମୁଖୁ ବାହାର ବଜୁଳପରି ଚରଣ ତାର ହୁଅନ୍ତେ ଚନ୍ଦ୍ରକାର ପିଠିରେ ଦେଖୁଛି କର ଯେ । ୨ ।

ଗୁଲି ଚଲାଇ ଗୁଲୁଛି କେହି କାହା ଠାଙ୍ଗଣ ଯାଉଛି ବହି କେ ଘୋଡ଼ା ଅଡ଼ି ରହନ୍ତେ ଲେଉ ଯୋଦ୍ଧା ଲଗାଇ ଯେ । କେଉଁଠି ଗୁଲେ ଦୁଇଗୋଡ଼ରେ ସୁଆର ଖସିପଡ଼ିବା ଡରେ କଣ୍ଠକୁ ଧରି ଭିଡ଼ି ଦୃଢ଼ରେ ସମ୍ଭାଳ ରହି ସେ । କାହା ଘୋଡ଼ା ଘୋଡ଼ାକୁ ଦେଖି ଆଗରେ ଯେ । ମତ୍ତେ ମିଶି ଯାଆନ୍ତେ ଅତି ବେଗରେ ଯେ । ବାଗହାତକୁ ଗୋଲପ ମୋଡ଼ି ଆଡ଼େ ସଲଖେ ଲଗାନ୍ତେ ଲେଢ଼ି ପବନପରି ଗଲା ସେ ଉଡ଼ି ସେହି ଲାଗରେ ଯେ । ୩ ।

କାହା ହ୍ରେଷାର ସ୍ୱନେ ସଂସାର କମ୍ପି ଉଠୁଛି କେହୁ ନ୍ରସାର ଫର ଛଟକେ କେ ବାଜ ତାର ପରା ଗତରେ ଯେ । ଜଳତରଙ୍ଗ ପରି କେ ଖର ଫେର ପଡ଼ଇ ଅତିପ୍ରଖର ବାମ ଦକ୍ଷିଣେ କରଇ ଗତି ଦୃଷ୍ଟି-ମତରେ ସେ । କେହୁ ନାଚୁଆ ପରି ଦଶେ ଗତରେ ଯେ । କାହା-ଚରଣ ଥୟ ନୋହେ ଛିତରେ ଯେ । କେ ବଙ୍କେ ଆସେ ଗ୍ରୀବାକୁ ମୋଡ଼ି ତେଇଁ ଯାଉଛି ଯୋଦ୍ଧାକ ଯୋଦ୍ଧେ କେ କ୍ରୋଧ ନଦୀ ନାଳ ପରାୟେ ଗୁଲି ଖାତରେ ଯେ । ୪ ।

ଅତ୍ୟନ୍ତ ମତ୍ତମାତଙ୍ଗକୁଳ ଚଳନ୍ତି ଧୀରେ ହୋଇ ପ୍ରବଳ କ ଷେ ପ୍ରବଳ ଅଙ୍ଗତ ମାଳମାଳ ସଂକୁଳ ଯେ । ଜବା ଧରଣୀ-ତରୁଣୀ କାଳ

Digitized by srujanika@gmail.com

ଦୁକୂଳ ପିନ୍ଧି ଦଶେ ମଞ୍ଜୁଳ କି ସେ ଆକାଶୁ ଛୁଡ଼ି ପଡ଼ୁଛି ଜଳଦ-
ଜାଳ ଯେ । ଏହି ସମୟେ ମଦଜଳ ବରଷେ ଯେ । ଅବଲୋକନେ
ଆଭାସୁଛି ମାନସେ ଯେ । ପୁଣି କି ସିନ୍ଧୁ ମନ୍ଥିଲେ ଦେବେ ସିନ୍ଧୁର କୁଳ
ଜନମି ଏବେ ଅସଂଖ୍ୟ ହୋଇ ଆସୁଅଛନ୍ତି ଅତି ହରଷେ ଯେ । ୫ ।

କେଉଁ ହସ୍ତୀକି ମୋତିଝାଲର ମାନଛି କାହା ମୁଣ୍ଡେ ସିନ୍ଦୂର ଘଣ୍ଟି
ଘାଗୁଡ଼ି କାହାର ଥୋରହସ୍ତ ବଟଏ ଯେ । ପ୍ରବଳ ତୁଙ୍ଗ କେଉଁ ମତ୍ତେଙ୍ଗ
ରଙ୍ଗ ସଜରେ ସାଜିଛି ଅଙ୍ଗ ଶୃଙ୍ଖଳିକ ତାର ଗଙ୍ଗାତରଙ୍ଗ ଯୋଖିବା ମାନ
ଯେ । କେଉଁ ଗଜରାଜର ବସନ୍ତ ସଜ ଯେ । ପଗ୍ନ ଭୂଷଣେ ଅତି ତୋରା
କା ତେଜ ଯେ । ତାହାଙ୍କ ମତ୍ତଗତିରୁ କରି ବାହାର ହୋଏ ନଷ୍ଟେ
ବଇରିକୁଳ-କମଳବନକୁ ଦଳି ଦେବ ଏ ଆଜ ଯେ । ୬ ।

ଏହି ସମୟେ ଗଣକ ଯାଇଁ ସାଏତ ଧରି କହିଲା ଏହିକ୍ଷଣେ ପ୍ରୟାଣ
କରିବେ ବୀରବରକେଶରୀ ହେ । ନେପାଳଦେଶ ଜାତ ସୁନ୍ଦର ଅମାରି
କଷି କଲା ହାଜର ତହିଁ ଆରୋହି ରାଜା ଚେମଣାବାବୁ ବାହାର
ଯେ । ଚୃରି ପାରୁଶେ ପାଗା ସୁଆର ଘେରି ଯେ । ନାମଖ୍ୟାତ ସିପାହି
ମାନେ ବାହାରି ଯେ । ଲକବଗ୍ଦେପଦାରେ ଡାକନ୍ତି କହି ନୋହେ ଏ
ଯେଉଁ ସମ୍ଭୃତ କି ତାରା ଛୁଡ଼ିପଡ଼ିଲା ସୁରନଗର ଶିରୀ ହେ । ୭ ।

ବରଷାକାଳ ନଦୀ ପରାଇ ବାଟେ ଅବାଟେ ଗଲେ ସେ ବହି ଦଶ-
କୋଶରେ ରହିଲା ନାହିଁ ତରୁ ତୃଣହିଁ ଯେ । ଚଳନ୍ତେ ତାଙ୍କ ଚରଣ
ଘାତେ ମହୀ ସମାନ ହେଲେ ପର୍ବତେ ପିଇଯିବାରେ ଶୁଖିଲେ କେତେ
ପୋଖରୀ ନଈ ଯେ । ପଥରହିଁ ରହିଲା ନାହିଁ ପଥରେ ଯେ । କାହା
ଧୃତି ରହିବ ଅବା ଏଥିରେ ଯେ । ଧୂମାନ୍ତ କରି ମୂଲକ ଯାକି ଧନ
କାଞ୍ଚନ ଲୁଟି ଗୁନେକ ଯାଇଁ ଅଇଲେ ଷାଠିଏ ବାଟି (୧) ବଳ
ଭିତରେ ଯେ । ୮ ।

(୧) ଢେଙ୍କାନାଳର ନଜଗଡ଼ ମଧ୍ୟସ୍ଥ ପଶ୍ଚିମଦିଗ ଜମି ଅର୍ଥାତ୍ କୁଣ୍ଠୁଣିସ୍ତା ପର୍ବତ ତଳରୁ ତେଙ୍କୁଣିସ୍ତା ସ୍ଥାନ ପର୍ଯ୍ୟନ୍ତ ସମସ୍ତ ଜମିକୁ ଷାଠିଏବାଟି କହନ୍ତି ।

Digitized by srujanika@gmail.com

ସ୍ଥାଜନମଣି ପୂର୍ବରୁ ଜାଣି ଅଗାଧପାଣି ଜଳ ନିର୍ମାଣି ପାଷାଣ କାନ୍ଥି ସଜାଡ଼ି ପୁଣି ମୁରୁଚ୍ଚ କର ଯେ । ଗୁଣ୍ଡ ବାଜିବା ସ୍ଥାନକୁ ଦେଖି ଭଣ୍ଡି କାନ୍ଥୁଲା ଅଛନ୍ତି ସାଜି ଚଣ୍ଡିପ୍ରସଦ ଗୁଣ୍ଡକୁ ଖଞ୍ଜିଛନ୍ତି ବମ୍ବିର ଯେ । କାହିଁ ମୂଲକ ମଇଦାନ ତୋପକୁ ଯେ । ସଜ କରି ଅଛନ୍ତି କୋଷେ ଧାପକୁ ଯେ । ଅଲପ ପାଛ କେଉଁ ମୁଣ୍ଡକୁ ରୁନ୍ଧି ଅଛନ୍ତି ଖାଲ ମୁଣ୍ଡକୁ ମଜ୍ଜୁଡ଼ା ଠେଲିଛନ୍ତି କାନ୍ଥାର ଉଚ୍ଚମାପକୁ ଯେ । ୯ ।

କେଉଁ ମୁରୁଚ୍ଚଭାଡ଼ିରେ ନଳ ସଜାଡ଼ିଛନ୍ତି ଧାଡ଼ିକି ଧାଡ଼ି ରୁପିଅଛନ୍ତି ଲାଗିଲେ ଉଡ଼ିଯିବ କରୁଡ଼ ଯେ । କାହିଁରେ ସିପା ଲଗାଇ ଭଡ଼ିଛନ୍ତି ଜଜାଲ ଯୋଡ଼ିକ ଯୋଡ଼ି ଅର୍ଦ୍ଧକୋଶ ଠାରେ ବାଜିଲେ ଝଡ଼ପଡ଼ିବ ଯୋଦ୍ଧା ଯେ । ରୂପ କାହିଁରେ ପେଠକଟା କମାଣ ଯେ । ତାର ଫିଟିଲେ ଅଛି ଏହି ପ୍ରମାଣ ଯେ । କୋଶେ ସଉକ ଙ୍କ ଘରୁ ଦାରୁ କବା ପଥର ଙ୍କ ଅଣ୍ଟା ମେରୁ ଙ୍କ କଣ ନର ବାଜନଙ୍କର ପୂର୍ବ ଏ ମାଣ ଯେ । ୧୦ ।

କାହିଁରେ ଧାଉଡ଼ିଆ ପଦାର୍ଥ ଜଲା ଭିତରେ ପକାଇ କାଣ୍ଡ ବନ୍ଧିବା ପାଇଁ ହୋଇଛି ମୁଣ୍ଡଲୁଆ ଭଣ୍ଡି ଯେ । କାହିଁ ଚକ୍ଷୁଣମାପକୁ ଆସି କେତେବେଳରେ ଯିବେ ବାପତି ବୋଲି ଉଲ୍କଣ୍ଠାଅଛନ୍ତି କଷିଶୁନ୍ତି-ବେ ଗଣ୍ଡି ଯେ । ଆଗ୍ନ କଣ୍ଟାରେ ମାଗ ବଦଳପଠା ଯେ । ଦଗବାରଣଭାଡ଼ି ଗୋଠାକୁ ଯୋଠା ଯେ । କେହି ବର୍ଣ୍ଣିବା ଗଡ଼ଦୁଆର ଝଙ୍କା ନୋହିବ ଛବା କାହାର ଲଙ୍କାରେ ମାଏ ଥିଲା ସଜାଡ଼ି ଦଶମୁକୁଟା ଯେ । ୧୧ ।

ଏହି ସମୟେ ଜଣାଏ ଗୃହ ଭେଳୋ ମହାରାଜା ପ୍ରତାପିଙ୍କ ତେମଣା ବାରୁ ପଡ଼ିଲେ ତାର ଦୈନ୍ୟ ଗୁପାର ନେ । ମହିମା ଦଶୁ ନାହିଁଙ୍କ ଧରଣୀ ରକ୍ଷିତ ନାହିଁ ପଥର ପାଣି ଦେଖିଅଛୁଁ ମୁଁ ଏହିକ୍ଷଣି ଗଡ଼ ପାଖର କ୍ଷେ । ପୁଣି ପୁଣି କହନ୍ତି ଅନେକନେକ ଯେ । ହୋରାଜା ବୃନ୍ଦାଳା ନଷ୍ଟେ ମୂଲକ ଯେ । କେ ବୋଲେ ନଷ୍ଟେ ଗଲାଇଁଧରା କେ-

Digitized by srujanika@gmail.com

ବୋଲେ ରାଜା ଭେଟିବେ ପରା କେ ବୋଲେ କାଞ୍ଚ ନୋହିବ ମରା ପଡିବେ ଲୋକ ଯେ । ୧୨ ।

ଏମନ୍ତ ଶୁଣି ସେ ନୃପମଣି ଦୋଧରୁ ପରେ ଚାହିଁ ତକ୍ଷଣି ନ ଦିଶେ ଟେକ ତୁରଙ୍ଗ ପୁଣି କେ ପାରେ ଗଣି ହେ । ଦେଖିଲେ ଲୋକେ ହୋଇ କାତର କହନ୍ତି ଘୋଟିଆସେ ସାଗର ଲୋକଚଳନ୍ତେ ବୋଲନ୍ତି ଦେଖ ତରଙ୍ଗପାଣି ହେ । ଗଜମାନଙ୍କୁ ବୋଲନ୍ତି ଏ ମଗର ଯେ । ଓଟ ନୁହନ୍ତି ଭାସୁଛନ୍ତି କୁମ୍ଭୀର ଯେ । ଯୋଡିବା ଅଶ୍ୱ ଗଡିକି ଚାହିଁ ବୋଲନ୍ତି ମୀନ ଯାଆନ୍ତି ଡେଇଁ ଫେଣପରାଏ ମଣନ୍ତି ତହିଁ ଶ୍ୱେତଚାମର ଯେ । ୧୩ ।

ଉଡୁଛନ୍ତି ଯା ଧ୍ୱଜା ଟେରେଖ ପୁଣି ବୋଲନ୍ତି ମଣିମା ଦେଖ ଏ କେତେ କେତେ ଲହଡିମାନ ଅଛି ଉଠି ଯେ । ଗଡଶଗଡ ଚଳିବା ଚାହିଁ ଯୋଲପ ପରା ମଣନ୍ତି ତହିଁ ତମ୍ବୁମାନଙ୍କୁ ବୋଲନ୍ତି ଦେଖ ବୋହିତ ଏହି ହେ । ଶସ୍ତ୍ରମାନଙ୍କୁ ସର୍ପ ପରାଏ ମଣି ଯେ । ନଳମାନଙ୍କୁ କ୍ଷୁଦ୍ର ମୀନରେ ଗଣି ହେ । କେ ବୋଲେ ଆହେ ହେଲ କି ବାଇ ସାଙ୍ଗାତେ ହିନ୍ଦୁ ଗର୍ଜିଆସଇ ମଣୁଅଛନ୍ତି କେତେ ନୃପତି ସହିତ ପୁଣି ହେ । ୧୪ ।

ମହାଅତିବଳ ସଉକ ଚାହିଁ କାହା ଧଇର୍ଯ୍ୟ ରହିଲା ନାହିଁ କେହି ବସିଲେ ବିଷାଦ ହୋଇ ମନ୍ତ୍ରୀଙ୍କ ଚାହିଁ ହେ । କେ ଅବା ତହିଁ ମନେ ବିଚାରେ ଅବଶ୍ୟ ହିତ ମରିବା ଥରେ କେବଳ ହସ୍ତ ପିଟିବା କାଳ ହେବ କି ନାହିଁ ହେ । କେହି ବୋଲଇ ମରିବାର ପ୍ରମାଣ ଯେ । ଛାଡିଦେଲେ ବାଞ୍ଛିବ ମୋର ତନୁଣ ଯେ । କେ ବୋଲେ ଆଗୁଁ କହି କି ହେବ ଯୁଝି ନା କରିବେ ଏ ବଳଦେବ ମନେ ହଉଛି ଅଖଡେ ଯିବ ପରା ପରାଣ ଯେ । ୧୫ ।

ଏମନ୍ତ ଶୁଣି ସେ ନୃପବର ବୋଲନ୍ତି ଏ ଯେ ଘୋର ସାଗର ଘୋଟି ଅଛୁଟି କିଛି ବିଗ୍ରହ ନାହିଁ ମନର ହେ । ଜଣରେ କର ପଚାଇଦର

Digitized by srujanika@gmail.com

ବୋଲନ୍ତ୍ର ହେବ ମନ୍ଦରଗିର ମନ୍ଥି ଦେବ କ ଗାଛ ବଗ୍ରର ମନେ ଭୁମ୍ଭର ହେ । ଏହ ସିନ୍ଧୁ ମନ୍ଥନ କରବା ଯେବେ ହେ । କେତେ ଯଶ-ରତନ ମିଳବ ତେବେ ହେ । କେବଳ ତୁମ୍ଭେ ସୁର ଅସୁର ପଗ୍ରଯ୍ୟେ ମତେ ଆଶ୍ବସି ଧର କାଳକାଳାକୁ ଶୀରତ ରହୁଯିବ ଏ ଭବେ ହେ ॥

ଏମନ୍ତ ବୋଲ ତ୍ତଠନ୍ତେ ଫୁଲ ଯାଚିଗଲା କ ଶୀତାଙ୍ଗ ଗ୍ରେଲ ବୋଇଲେ କାଞ୍ଚ ବୁଝିବା ଗୁଲଚରଣ ସବୁ ଯେ । ପ୍ରାଣକୁ ଆଶା ରଖୁଛ ଯେହ୍ନ କହୁଛ ଏତେବେଳୁ ସେ ଯାଉ ମରବା ଲେକ ମୋ ପାଖେ ଥାଉ ଡେମଣାବାକୁ ଯେ । ଭୁଚ୍ଛା ଛଣ୍ଡାଉଥାଅ ନଶକୁ ମୋଡ଼ ଯେ । କାଲ ଅଛି ଏତକବେଳକୁ ପଡ ଯେ । କେ ପାଡ଼ କେହ୍ନ ମରିବ ଛଡ଼ା ଏହ ଠାବରେଁ ପଡ଼ିବ ସିନା ଖଉଣ ଦେବା ଗୋବର୍ ପର୍ ପାଠ ଉପାଡ଼ ଯେ । ୧୭ ।

ଶୁଣି ଏମନ୍ତ ବଚନ ତହୁଁ ନଖେ ନାଃଶଙ୍କେ କର ପକାଇ ସହ ନ ପାର ବୋଇଲେ କେହ୍ନ ଛଡ଼ିବ୍ ନାହୁଁ ଯେ । ଖ୍ୟାତିନ ବୋଲ ବୋଇଲ ଏହା ନୋହଲେ ନକି ଯାଅନ୍ତା ସ୍ୱହା କେବଳ ଗଣ୍ଡିଦେଖିବ ମୁଣ୍ଡ ଦେଖିବ କାହୁଁ ଯେ । ଖଡ଼ ଦେଖି ଏ ପାଡ଼ମାନଙ୍କୁ ଥରେ ହେ । ଟଡ଼ ଭତରେ କିପାଁ ଲୁଚିଛ ଡରେ ହେ । ଗର୍ଦ୍ଦନ ମାର ଅଛେ ଗୋସାଇଁ ଏ କଥା କେହ୍ନ ପାରବ ସହ ଚଙ୍ଗବଦନ ତୁଙ୍ଗ ତାଙ୍କର କ୍ରୋଧରେ ଥରେ ହେ । ୧୮

ଶୁଣି ସାନନ୍ଦ ନରଇଶ୍ବର ବୋଇଲେ ଏବେ ହେଲା ଗୋଚର ଏହା ଶୁଣିବାପାଇଁ ପଡଲା ସିନା କେବଳ ହେ । ପଇସାଃ ଘରେ ନାହିଁ ଅମୃର ସେହେତ ଦଶ ବଂଶ ହଜାର ନ ଜନବେ ପୁଣି ଯୁଝିବା କଥା ହୋଇଲା ମୂଳ ହେ । ଅଜ୍ଞା କରି ବଜାୟେ ଶୀପାଲଙ୍କିରେ ଯେ । ଯାଇ ପ୍ରବେଶ ଗଡ ମୁରୁଗୃଦ୍ୱାରେ ଯେ । ପୂର୍ବରୁ ଜଗିଥିଲେତ ଲେକ ଯେଉଁ ଠାବକୁ ଯେଉଁ ପାଏକ ଖଞ୍ଜି ରଖିଲେ ଗଡ଼ନାୟକମାନଙ୍କ ଠାରେ ଯେ । ୧୯ ।

Digitized by srujanika@gmail.com

କାହାକୁ ଗୁହ୍ନିଁ ବୋଲନ୍ତ ବାପା ମୁଖ ଶୁଖାଇ ଦେଇଛୁ କିପାଁ ଦେବ ସମୁଖ ଘୋଡ଼ା ଟିରୋପା ମୁକୁଟା ଲୋକେ ରେ । କେତେବେଳକୁ ମରଦପଣ ଏହି ଠାବରେ ବୁଝିବା ଝାଣ ଦେଖି ବହିଛି କେତେ କମାଣ ଜଞ୍ଜାଳ ନାଳ ରେ । ଗୋଡ଼ ବଢ଼ାଇ ସେ ଙ୍କେ ତେଇଁବେ ଜଳ ରେ ଘୁସୁର ତ ନୁହନ୍ତ ଦେବାକୁ ଗିଳ ରେ । ଘଡ଼ିଏ ମାହ ଅନ୍ଧାଅ କିନା ପୋଡ଼ିବା ଏକାବେଳକେ ସିନା ଭଲ କେମନ୍ତେ ବଞ୍ଚିବ ନାହିଁ ଅମୃତ ଘୁଳ ଯେ । ୨୦ ।

ଆର ମୁରୁଖ କଡକି ଯାଇଁ କହନ୍ତ କିଛି ବଗୁର ନାହିଁ ପିଠି ଉପରେ ଅଛି ଯେ ମୁହିଁ ଥାଅ ନିଶ୍ଚିନ୍ତ ଯେ । ବାହୁ ସେ ପଛେ ଫଉଜା ବାଜା ଯେତେ ହୋଇଲେ ଲଡ଼ୁକା ସିନା କଡ଼ୁକା ଂ ରଖି କି କରିବ ନା ମୂଳ ହେମନ୍ତ ହେ । ବରଗି ଏ କି ତେଣା ପାଇଲେ ଏବେ ହେ । ଜଳକାନ୍ତରେ ଅସି ତ୍ରୁଡ଼ିପଡ଼ିବେ ହେ । କି ତବ୍ବା ତାଙ୍କ ଅଙ୍ଗ ପଥର ବାଞ୍ଚିବ ନାହିଁ ଅମୃତ ତୀର କେ ବକ ହେନ୍ତୁ ଶ୍ୟାମଳ ଚହ୍ଳା ଯିବ ଦଇବେ ହେ । ୨୧ ।

କାହା ମ ଚୁଖ କଡକ ଯାଇଁ ଟିଟିରେ ଟ୍କ ବୋଲନ୍ତ ଭାଇ ଏହୁ ସଲଖେ ଥି ବୁଝି ଗୃହ୍ନ ଅଛଲେ ବାହୁ ଯେ । ହାତେ ତୋ ଅଛୁ ଯେଉଁ ଜମୁର ପୋଡ଼ୁ ରୁ ଏକା ହୋଇଣ ଯୀର ହାତ ହୋଇଲେ ଲେଜୁହିତେ ଣେ ପଡ଼ାବ ଯୀଛ ଯେ । ମନହାସେ କହନ୍ତ ପୁଣି କାହାକୁ ଯେ । ସବୁ ବେଳେଉ ଠୁକୁଥାଉ ବାହାକୁ ଯେ । ଲୋକଙ୍କୁ ଗୃହ୍ନିଁ ଛୁଡ ପୁଲାଇ କନ୍ଧୁତ ଥାଉ ୫ ଶ ହଲଇ ଦେଖିବା ଦେଖି କେଡ଼େ ଝାଁଣ ତୋ ମନ ଲୁହାକୁ ଯେ । ୨୨ ।

ଏମନ୍ତ କଲେ ଖାଡଗରନଣା ସୁଧ କରଡ ସିନା ସେ ଭାଷା ମରମ-କଥା ଯେଉ ପ୍ରଶଂସା ଜୀବନଆଶା ସେ । ଛାଡ଼ ଂକଲେ କଲେ ହେମନ୍ତ ଲାଗି ରହିଲେ ଯେନ୍ତୁ ଯେମନ୍ତ ବଗୁର କଲେ ନୋହୁବ ।

Digitized by srujanika@gmail.com

ଶୁଇ ଏ ଲୋକବ୍ୟବହାରେ । ସରଦାର ଯହିଁରେ ଅଟେ ନୃପବତ ଯେ । ମନ କାଁଲ ହେଲା ପଥରମତ ଯେ । କ ଦିନ ଗଢ ଅଠପହର ବାନ୍ଧି ରହିଲେ ଲୋକ କମର ମୀନକୁ ବକ ଜଗିଲାପରି ଜଗି ଥାଆନ୍ତି ଯେ । ୨୩ ।

ଯେତକ ମାଗିଲା ଯେତେ ଅହାର ଆଜ୍ଞାପ୍ରମାଣେ ଦେଲେ ସବୁରି ପାଏକଲୋକେ ପାଇଲେ ପୁଣି ଯାଉଁଳ ପତ୍ର ଯେ । ଡାଲି କଦଳି ବଡ଼ି ଆଚ୍ଚୁର ଘୃତ ନବାତ ଦଧି ଖାକର ଯହିଁକି ଯାହା ମନ ବଳିଲା ନେଲେ ସେ ଲୋଡ଼ି ହେ । ଅନୁରୂପରେ ଦେଲେ ଗୁଳ ବାରୁଦ ଯେ । ଗୃହପାଖେ ନାଗରା ଠମକ ନାଦ ଯେ । ଅର ଛାନ୍ଦରେ ବର୍ଣ୍ଣିବା ପୁଣି ଯେମନ୍ତ ହେଲା ଯୁଦ୍ଧକାହାଣୀ ବ୍ରଜନାଥର ଭରସା କୃଷ୍ଣ କମଳପାଦ ହେ । ୨୪ ।

ତୃତୀୟ ଛାନ୍ଦ ।

ରାଗ ଚକ୍ରକେଳି ।

ଶୁଣ ସାଧୁଜନେ ତୋଷଚିତ୍ତରେ । ଏବେ ସମର ହେଲା ଯେମନ୍ତରେ ।୧।
ଗଡ଼ ପାଶରେ ଫଉଜ ପଡ଼ିଲେ । କେହି ଲଢ଼ିବା ଏ ବର୍ଗିର କଲେ । ୨।
ବାନ୍ଧି ହୋଇଲେ ତନମୁକ୍ତା ହୋଇ । ତିନ ଦଗରେ ବାହାରିଲେ ସେହି ।୩।
ଘେନ କୃଷ୍ଣମହାଜକୁ ସଙ୍ଗରେ । ଚଇତନ୍ୟ[୧] ଦାସ ଗଲେ ଆଗରେ ।୪।
ଅସି କଟାଇ ସେ ବାଠ ଛଡ଼ାଇ । ତେଲଙ୍ଗାଙ୍କୁ ଘେନଗଲା କଢ଼ାଇ । ୫।
ଏଣେ ସାହାଲସକର ତୟାର । ଅଟେ ଚେମଣାବାବୁ ଏ ବାହାର । ୬ ।
ମହା ଦେଉଳ[୨] ଉପରେ ଚଢ଼ାଉ । ବାଜେ ନାଗରା ଧିଧି ଧାଉ ଧାଉ ।୭।
ଯାଉଁ ପିଆଦା ଢାଲ ତରୁଆର । ବାହାରିଲେ ଦଶ ବାର ହଜାର । ୮।

(୧) ଚଇତନ ଦାସ ଜଣେ ବଙ୍ଗଦେଶୀୟ ମନ୍ତ୍ରୀ ପ୍ରଥମେ ଢେଙ୍କାନାଳ ମହାରାଜାଙ୍କ ଠାରେ ଚାକରି କରୁଥିଲା । ତହୁଁ ଉତ୍ତାରୁ ରାଜାଙ୍କ ସହିତ ମନାନ୍ତର ହୋଇ ମରହଟ୍ଟାଙ୍କ ଅଧୀନରେ ରହି ଗୁପ୍ତରେ କାର୍ଯ୍ୟ କଲା ।

(୨) ଢେଙ୍କାନାଳ ରାଜାମାନଙ୍କ ସମାଧି ସ୍ଥାନ ।

Digitized by srujanika@gmail.com

ଆଠ ଦଶ ହଜାର ହେଲେ ସଜ । ଅତି ପ୍ରବଳ ସେ ବରକନ୍ଦାଜ । ୯ ।
ଯେନ ତଙ୍କୁଣିଆମାନେ ତଙ୍କୁଣ । ପାଞ୍ଚ ସାତ ହଜାର ଗଲେ ପୁଣ । ୧୦
ଗଡ଼ଦ୍ୱାର ସନମୁଖେ ଅପାର । ହେଲେ ବାହାର ବଛାଅଶ୍ୱଆର । ୧୧ ।
ହସ୍ତୀ ପଲ ପଲ କରି ଆଗରେ । ଚଳାଇଲେ ବନ୍ଧୁକ କାଣ୍ଡଭରେ । ୧୨ ।
ଗୁଳ ବାରୁଦ ଗଡ଼ିମାନ ଭରି । ଲଦାବଳଦ ନୋହେ ଲେଖା କରି ।୧୩।
ତୋପମାନ ଚଲାଇଲେ ପ୍ରବଳ । ଯୋଖ୍ ମହିଷ ଆଠ ଦଶ ହଳ । ୧୪ ।
ଯେନକମାଣ କନ୍ଧରେ ତୂଣୀର । କେତେ ତୀରନ୍ଦାଜ ହେଲେ ବାହାର ।୧୫
ହସ୍ତିପରେ ଗଣ୍ଡିଆ ପେଠଚିରା । ଓଟ ଉପରେ ଜଜାଲ ଜମ୍ବୁରା । ୧୬ ।
ଆଗେ ବାଣ ନିଶାଣକୁ ଚଳାଇ । ଯହିଁ ସଂସାର ଅନ୍ଧାର ଦିଶଇ ।୧୭।
ତେଣେ ତେଲଙ୍ଗାବଳଙ୍କ ସଙ୍ଗରେ । ଭଇରବ ଦାସ ଯୁଝି ଲଟାରେ ।୧୮
ଅର୍ଦ୍ଧଅସ୍ତ୍ରରେ ହେଲେନ ବାହାର । ଏହିକାଳେ ସେ ହୋଇଲା ଗୋଚର ॥
ଶଏ ପଞ୍ଚାଶ ଲୋକ ଥିଲେ ଜଗି । ଆଗେ ଆଖଣ୍ଡନଳ ଦେଲେ ଦାଗି ॥
ବାଲିବନ୍ଧ କି ସମ୍ଭାଳେ ସରିତ । ଠେଲା ମାଇଲେ କି ଭାଙ୍ଗେ ପର୍ବତ ॥
ସିନ୍ଧୁ ପରାୟେ ତ ଯୋଚି ଆସନ୍ତି । ତାଙ୍କ ବଳେ କି ଅଟକ ପାରନ୍ତି ।୨୨
ଯେଲ ପ୍ରବଳେ ଅଗସର ଗଲେ । ଯାଇଁ ଲୋକେ ହଜୁରେ ଜଣାଇଲେ ॥
ତାହାରା ଯୁଝିଲେ ବରଗି ମଣିମା । କେତେ ଫଉଜ କି ତାହା ଗଣିମା ।୨୪
ଭୋଇସାହିରୁ ଅଇଲେଣି ବଳ । ଆମ୍ଭେ ନ ପାରିଲୁଁ ଆଉ ଓଗାଳ ।୨୫
ଏହା ଶୁଣି ଆଜ୍ଞା କଲେ ରାଜନ । ଦେଖି ଆମ୍ଭ ଲୋକେ ଯାଅ ବହନ ॥
ତୁମ୍ଭେ ଅଟକ ଥାଅ ମାତ୍ର ଯାଇଁ । ଆମ୍ଭେ ପଛେ ପଛେ ଯାଉଅଛୁଇଁ ॥
ଶୁଣି ଶୂରବୀରମାନେ ବାହାର । ଯେନ ଧାଇଁଲେ ଯେଣ୍ଡା ହତିଆର ॥
ଟେଣ୍ଟ ରଙ୍ଗରେ ଶୁଭୁ ନାହିଁ କିଛି । ଗୁଳ ବରଷା କେବଳ କରୁଛି ॥
ବୃକ୍ଷମାନଙ୍କରେ ନାହିଁ ପତର । ଫାଟି ଯାଉଅଛୁ କାଠ ପଥର । ୩୦ ।
ଦାଗି ବନ୍ଧୁକ ହଜାର ହଜାର । ଦଶଦିଗ କରନ୍ତି ଅନ୍ଧକାର । ୩୧ ।
ଯେଲ ଅସ୍ତଛନ୍ତି ସେହି ଧୂଆଁରେ । ଯାଇଁ ମିଳିଲେ ବୀରସର୍ଦାରେ ।୩୨
ଦୁଇ ବଳଙ୍କର ମେଣ୍ଟ ପଡ଼ିଲା । ଅତି ପ୍ରବଳ ଲଢ଼ାଇ ହୋଇଲା ।୩୩।

Digitized by srujanika@gmail.com

ଜଣ ଜଣଙ୍କୁ ଘେରବନ୍ଦୀ କର । ତଙ୍କୁଣେଆଁ ବେଢ଼ିଲେ ତନ ଗୃର ।୩୪।
ଅଡ଼ି ହାତି ରହିଥିଲେ ସମ୍ଭାଳ । ପଶିଗଲେ ମରମସ୍ଥାନେ ଗୁଳ । ୩୫ ।
ଜୀବୁ ଯିବାଯାଏ କୋହି ନସଡ । ଫିଟୁଥିଲେ ତାଙ୍କର ଖଣ୍ଡାହସ୍ତ । ୩୬ ।
ଜଣ ଜଣକେ ସେ ଦ୍ରୋଣ ସମାନେ । ରଣ ଯାଗ କଲେ ଗୃତ ସୁମନେ ୩୭।
ଗୁଳ ଗଳଗଲେକ କା ହୃଦର ! ତେବେ ବୋଲୁଛ୍ଛ ଭାଇ ମାର ମାର ।୩୮
ଶ୍ରେଷ୍ଠ ବସିଲେକ କାହା ମୁଖରେ । ଖଣ୍ଡାହସ୍ତ ସେ ବଞ୍ଚଇ ପ୍ରଖରେ ।୩୯
କାହା ଗୋଡ଼ ଭୁଜ ପଡ଼େ ଧରଣୀ । ଯାଇ ଧୁସୁର ମିଶୁଅଛୁ ହାଣି ।୪୦
ଗୁଳ ଉପରେ ତ ଗୁଳ ବାଜଲେ । ତେଣୁ ପ୍ରାଣପ୍ରୟାଣ ହୋଇଗଲେ ।୪୧

ବଳେ ରାଜା ମହେନ୍ଦ୍ର ବାହାଦୂର । ତେଲଙ୍ଗାଏ ଗଛନ୍ତି ଗହଣର ॥
ପାଣି ସିନା କାଟି ପାରେ ପାଣିକ । ଜାତ ସେହିରୂପେ କାଟେ ଜାତକ ॥
ଦେବତାଙ୍କ ଖଡ ଦେବେ ଜାଣନ୍ତି । ଗୃସୁରଙ୍କ ମାୟାଦୈତ୍ୟେ ବୁଝନ୍ତି ॥
ଦୁଇବଳ ହୋଇଲେ ମିଶାମିଶି । ଷଣ୍ ଷଣ୍ କ ମେଣ୍ ହେଲେ ଆସି ॥
ଆଡ଼ ଭୁଷି ତଙ୍କୁଣଙ୍କୁ ତଙ୍କୁଣ । ତଡ଼ ଖଡ ହଅନ୍ତି ପୁଣ ପୁଣ । ୪୬ ।
ଫିଟି ପିଟି ଛୁଟିକାଇ ଭୁଷନ୍ତି । କଟି ପାର ଅଣ୍ଡଆଇ ବସନ୍ତି । ୪ । ଯୋଦ୍ଧା ରଖିଥାନ୍ତି ଅଖିଅଖିରେ । ଦେଖି ଦେଖି କେ ଡାକ ହାକ ମାରେ । ୪୮ । ଲାଖି ପଡ଼େ କାହା ହୃଦେ ତଙ୍କୁଣ । ଅଖିବାଟେ ଖଡ଼ି ଯାଏ ପରାଣ । ୪୯ । କେଉଁ ହୋଗ ବ ସ୍ ବୋଲ ଡ଼ାକଇ । ତେଉଁ ତଙ୍କୁଣ ମଧ୍ୟରେ ଠୁକଇ । ୫୦ । ଅତେ ତେରଛ୍ଛ ଭୁଷିଦେଲା ନେଇ ଫୁଟି କଙ୍କାଳ ପଡ଼ିଗଲା ମହି । ୫୧ । କୃପା କଲେ ପ୍ରଭୁ ଚନ୍ଦ୍ରଶେଖର । ଲୋକ ବଳ ମାଇଲେ ସ୍ବଜାଙ୍କର । ୫୨ । ଯାହା ପ୍ରବଳ ହୋଇ ଅସୁଥିଲେ । ଅଗେ ନ ଅସି ଅଟକ ପଡ଼ିଲେ । ୫୩ । ଭଙ୍ଗ-ପରତ ହୋଇଗଲେ ରହି । ତଡ଼ ତଡ଼ ଅଗ ନଳ ଫିଟାଇ । ୫୪ ପୁଣ ମହି ଲୋକେ ଅଗ ହୁଅନ୍ତି । ସେହି ସେକେ ସେକେ ଲେଛ୍ଛ ହଅନ୍ତି । ୫୫ । ପୁଣ ପଛ ଲୋକେ ହୋଇ ହାଜର । ହାଗି ହନ୍ତି

Digitized by srujanika@gmail.com

ସେହି ତରତର । ୫୬ । ଆଗ ଲୋକେ ପୁଣି ଗ୍ରେଡ଼ି ପକାଇ । ବେଗେ ହାଜର ହୋଇଥାନ୍ତି ଯାଇ । ୫୭ । ଦଣ୍ଡେ ମାତ୍ର ନ କରନ୍ତି ବିଶ୍ରାମ । କଲେ ଦେବଙ୍କୁ ଦୁର୍ଲଭ ସଂଗ୍ରାମ । ୫୮ । ଗୁଳି ଗୋଟିଏ ନ ପଡ଼େ ତଳରେ । ଯାଇ ବସଇ କାହା କପୋଳରେ । ୫୯ । କାହା ଛାଟରେ କଙ୍କାଳେ କାହାର । କାହା ପେଟ ଫୁଟି ଯାଏ ବାହାର । ୬୦ । କେଉଁ ଲୋକର ତଣ୍ଟି ଯାଏ ଫୁଟି । ଭାଙ୍ଗି ପକାଏ କାହାର ଛକାଠି । ୬୧ । ଯାଇଁ ବାଜଇ କାହାର ହସ୍ତରେ । ଛାଡ଼ ବନ୍ଧୁକ ଭାଜେ ସେ ଅସ୍ଥିରେ । ୬୨ । ଭାଙ୍ଗି ପକାଏ କାହା ଜାନୁହାଡ଼ । ସେ ଯେ ଘୁସୁରେ ହୋଇ ଲଡ଼ବଡ଼ । ୬୩ । କାହା ଥାନ ମୁହୁଁରେ ହାବୋଡ଼େ । ଫୁଲ ପରି ଏ ସେହି ଝଡ଼ପଡ଼େ ।୬୪। କାହା ବଦନେ ଭେଦିଛି ବାଜଇ । ଫାଳେ ଦାନ୍ତ ପାଟିରୁ ଯେସନ ଗଲା । ୬୫ । ଥୁଥୁ କରି ପକାଏ ସେ ରକତ । କଥା କହିବାକୁ ନୋହେ ଶକତ । ୬୬ । ବେଲବେଲକେ ପଡିର ସତର । କେଉଁ ଭୂଇଁରେ ଲୋକ ବାର ତେର ।୬୭। କେଉଁଥର ଆଠ ଦଶ ପଡନ୍ତି । କେଉଁ ଥରବା ପଚଶ ଝଡ଼ନ୍ତି । ୬୮ । ଭେଡ଼େ ସଂଉଜ କଷ୍ଟମରାଜର । ପଡଗଲେ କେତେ ନୋହେ ସୁମାର । ୬୯ । ଯେବା ବିଷିଲା ଗଲା ଘାଅ ହୋଇ । ଖଣ୍ଡ ନୋହି ଗୋଟିଏ ମାତ୍ର ନାହିଁ । ୭୦ । ଲୁଡ଼ ଲୁଡ଼ ମଜ୍ଜା ପଡ଼ି ଅଛନ୍ତି । ପଙ୍କ ହୋଇଲା ରକତରେ ଖିତି ।୭୧। ଯେବା ପଛେ ଅସୁଥିଲେ ଭାଜିଲେ । କେତେ ତଳୁଣ ନଳ ଛାଡ଼ିଗଲେ । ୭୨ । ପାଗ ମଥାରୁ ଫିଙ୍ଗି କେ ପଳାଏ । କେବା ବାଙ୍କ କଣ୍ଟାଇ ଫିଙ୍ଗି ଧାଏଁ । ୭୩ । କାହାପାଶେ ରାଜାଲୋକେ ମେଲନ୍ତେ । ରଖ ବୋଲି ଚରଣ ଧରେ ଦନ୍ତେ । ୭୪ । କେଉଁ ବୀର ତହିଁ ହସ୍ତ ଚଳାଇ । ପ୍ରାଣ ଦେଲା ନସତ ଅଉ ନୋହି । ୭୫ । ଏହିରୂପରେ ପ୍ରହରେ ଲଢ଼ାଇ । ଶୂନ୍ୟେ ଉଡ଼ି ନ ପାରିଲେ ଚଢ଼ାଇ । ୭୬ । ହଗ ନ ଦିଶିଲା ଧୂଆଁ ହେବାରେ । ଦିଶି ପର ଭ୍ରମ ହେଲା ଦିବାରେ ।୭୭ ବ୍ୟାଘ୍ର ମୃଗଆଦି ଗଲେ ପଳାଇ । ଭୟେ ଦୂରରେ ରହିଲେ ସେ

Digitized by srujanika@gmail.com

ଯାଇଁ । ୭୮ । ପୂର୍ବେ ଲଙ୍କା ଲଢ଼ାଇ ଯା ଗୀତରେ । ଶୁଣୁଥାଇଁ ଏବେ ସେହ୍ନ ମତରେ । ୭୯ । ଗଲା ରକତ ନଦୀ ପର ବହ୍ନ । ଶିର ପର ମଡ଼ା ପଡ଼ି ଦଶଇ । ୮୦ । ଦେଖାଗଲା ନାଚବାର କବନ୍ଧ । ଥାଉ ଥାଉ ନୟନ ହେଲା ଅନ୍ଧ । ୮୧ । ଯହୁଁ ବରଗି ହାରି ପଳାଇଲେ । ଜୟ କରି ଗଂଜନ ଲେଉଟିଲେ । ୮୨ । ଏଣେ ମୁଣ୍ଡୁ ଗରେ ଗୁଣ୍ଡ ଦାଗନ୍ତେ । ଉଡ଼ିଗଲେ ଫଉଜ ଅବା କେତେ । ୮୩ । ଉଡ଼ିଗଲେ ଟା କେତେ ଘୋଡ଼ା ଘୋଡ଼ୀ । କେତେ ତମ୍ବୁ କନାଠ ନେଲା ଉଡ଼ି । ୮୪ । ଗୁଳା ଗୋଟିକେ ଦଶ ବାଂଶ ଯହୁଁ । ଉଡ଼ି ଯାଆନ୍ତି ତୁଳା ପ୍ରାୟେ ହୋଇ । ୮୫ । ସାରା ଫଉଜ ପଡ଼ିଗଲା ହାଲ । ସବୁଠାରେ ଘାଉଆ ପଲ ପଲ । ୮୬ । କେତେ ମଲେ ସେ ହେଲା ନାହିଁ କଲ । ଯହୁଁ ଶୁଣିବ ଡକା ହାଲହୋଲ । ୮୭ । ଗୁଳ ଦାଉରେ ସେଠାରେ ନ ରହ୍ନ । ସୈନ୍ୟ ପଡ଼ିଲେ କୋଶେ ଘୁଞ୍ଚି ଯାଇ । ୮୮ । କେହ୍ନ ବୋଲଇ ହେଲା କ କରମ । ଏତେ ଅନର୍ଥ କଲା ରାଜାରାମ । ୮୯ । କେହ୍ନ କାନ୍ଦ ବୋଲେ ମଞ୍ଜୁ କ କଲା । ଢେଙ୍କାନାଲରେ ବଂଶ ବୁଡାଇଲା । ୯୦ । କେହ୍ନ ବୋଲଇ ହାହା ବେଟା ମେରା । କସେ ଗୁନ ବସୋରୁ ମଇଁ ତେରା । ୯୧ । କେହ୍ନ କାନଇ ହାହା ମେରା ଭାଇ । କଆ ଗୁନା ମୁଜକୁ ଛୋଡ଼ଗଇ । ୯୨ କେହ୍ନ ବୋଲେ ହା ବେଟି ମେସେ ଖେଟି । ହାହା ଜୁଆଇଁ ଭୟ ଶିରଂ କାଟି । ୯୩ । କେ ବୋଲଇ ହଜାରଟଙ୍କା ଘୋଡ଼ୀ । ଗୟା ମେରା ତୋପକ ମାରେ ଉଡ଼ି । ୯୪ । କେ ବୋଲଇ ଢଆ କଆ ଖୋଦାଇ ଢାଲା ପୁଟି ଯୋ ଗିରା ମେଘ ଭାଇ । ୯୫ । କେ ବୋଲଇ ଘାଏ ଲହୁଆହାଥି । ଗୁଳା ଲଗି ପାଓ ମୁ ଯାଉ ଯାଉ । ୯୬ । କେହ୍ନ ଖଇ-ପରେ କର ଠୁକଇ । ହାହା ମେରା ବାବା ବୋଲି ଡାକଇ । ୯୭ । କେହ୍ନ ଭୁମିରେ ପଡ଼େ ହାହା କରି । କେହ୍ନ ଗୋଲୁ କାଣ୍ଡଫଲ ଉତାରି । ୯୮ । ତହୁଁ କାହାକୁ ଖୁଆଇ ମାଜୁମ । ଗୁଳା କାଢ଼ନ୍ତେ -

Digitized by srujanika@gmail.com

ଯାଉଅଛ୍ତି ଗ୍ରାମ । ୯୯ । କେହୁ ଶଶୁରକୁ ମାଟି ଦେଉଛ୍ତି । କେହୁ ମଉଳାକୁ ନେଇଁ ଦହୁଛ୍ତି । ୧୦୦ । କେହୁ କାଣ୍ଡକାଢ଼ି ଘାଅ ଦିଅଇଁ । କାହା ଘାଅ ରକତ ନ ରହଇ । ୧୦୧ । ଏହିରୂପେ ସର୍ବଲୋକେ ଅକୁଳ । ଯହିଁ ଚାହିଁବ ସେଠାରେ ଶୋକଜଳ । ୧୦୨ । ବସି ପାଞ୍ଚନ୍ତ ଅଟାରି ବଜାର । ଆଜ ସ୍ତ୍ରୀସରିକ ନେବେ ମାରି ।୧୦୩ କେ ବୋଲଇ ଚାଲ ଯିବା ପଳାଇ । କେ ବୋଲଇ ବାଟ ପାଇବା ନାହିଁ । ୧୦୪ । ଠାବେ ଠାବେ ଜଗିଛନ୍ତି ଚୂହାଡ଼ । ଭାଙ୍ଗି ପକାଉ-ଛନ୍ତି ହାତ ଗୋଡ଼ । ୧୦୫ । କେ ବୋଲଇ ମୁଁ ଶୁଣିଲ ଭାଇରେ । ଏହି ଲଙ୍କାକାନ୍ତେ ଛନ୍ତି ରହିରେ । ୧୦୬ । ଖାଲି କାଣ୍ଡ ଧନୁ କରେ ତାଙ୍କର । ଛାପି ପଡ଼ିଛନ୍ତି ପାଞ୍ଚହଜାର । ୧୦୭ । ଜହ୍ନବୁଡ଼ ସରକ ସେ ମିଳିବେ । ଆଜ ଗୋଟିକଠାରୁ ଦାଇ ଦେବେ ।୧୦୮। କେ ବୋଲଇ ଗୁପିଆ ନେବା ପାଇଁ । ଜାଣେ ମରିବାକୁ ଆସି ଅଛଇଁ । ୧୦୯ । ରାଜା-ରାମର ଛାଡ଼ିନେଲେ କନା । ପ୍ରାଣଦାନ କ ବୁଝି ଦେଲେ କନା ॥ ଏବେ ଯିଙ୍ଗିତ କାହିଁ ନାହିଁ ରାଜା । ଯିବ ତେମଣା ବାବୁ ପାଇ ଲଜ୍ଜା । ୧୧୧ । କେତେ ଏହିମତେ କେ ତା କହିବ । କହିଲେତ ଲଙ୍କାପୋଥି ହୋଇବ । ୧୧୨ । ଆର ଛାନ୍ଦେ ପୁଣ କହୁ ଚରିତ ଶୀତେ କହିବ କବି ବ୍ରଜନାଥ ।୧୧୩ ।

—ଃ—

ଚତୁର୍ଥ ଛାନ୍ଦ ।

ରାଗ କଲ୍ୟାଣଅହାରୀ ।

ଏମନ୍ତେ ରସିକ ଅତ କଉତୁକ ଚରିତ କହୁଥାଇଁ ଶୁଣ ।
ଦାଗିଲେ ବରଗି ଗଡ଼ଦ୍ୱାର ଭାଙ୍ଗିବାକୁ କେତେମତେ କମାଣ ।
କେ ଗୁଳା । କବାଟରେ ଯାଇ ବାଜନ୍ତି ।
କେଉଁ ଗୁଳା ଭାଡ଼ପଟା ନେଲା ତଡ଼ି ପନ୍ତି କେତେ ଗଛ ଭାଙ୍ଗିଲା ।୧।
କେଉଁ ତୋପ ପିଟି ଘେନଗଲା ଚାଟି ଘୋଡ଼ା ଦୁଇ ଚାରି ଗୋଟାକୁ

Digitized by srujanika@gmail.com

:

ଉପରେ ଉପରେ ଗୁଳି କେଉଁ ଗୁଳା ଗଞ୍ଜାଇ ଦେଲା ଲଖାକୁ ।
କେ ବାଜ । ଭାଙ୍ଗି ପକାଇଲା ପଥରେ ।
କେଉଁ ଗୁଳା ଏଡ଼େ ଧାପ ଦେଇଛି ଯେ ଗୁଳିହେଉ ନାହିଁ ପଥରେ ॥
କେଁ ଗୁଳା ବାଜଲା ମୁଣ୍ଡ ଯେସନ ଗଲା ଭାଡ଼ ଉପରୁ ଭାଙ୍ଗିଆର ।
କେଉଁ ଗୁଳା ଅସି ପଶିଯାନ୍ତେ ଲଗି ଗଲା ଡେଡ଼େ ବଡ଼ ଦୁଆର ।
ଏରୂପେ । ଦାଗିଲେ ଅନେକ କମାଣ ।
କେ ଅବା ମାଗିଲା କେହ୍ନ ଉଡ଼ି ଗଲା ଭୟ ପାଇଲେ ପାଇକାଣ ।୩।
ଚତୁରମଣି ଶିରୋମଣି ନୃପତି ପ୍ରତି ମୁରୁଚ୍ଚ ବୁଲିଯାଇ ।
ଏମନ୍ତ ଅନୁମାନ କରି ବସାଇ ତୋପମାନ ଦେଲେ ଦଗାଇ ।
ଗୋଟିଏ । ଗୁଳା ନ ଛୁଡ଼ଇ ତଳକୁ ।
ବାଜ ଦଶବଂଶ ଲୋକ କରି ନାଶ ମନ୍ଦି ଦେଲା ଡେଡ଼େ ବଳକୁ । ୪
ନାନା ନଟକୁଟ ଛଟପଟ ହଟ ଉପାୟ କଲେ ତାହାଙ୍କର ।
ଢ଼ଙ୍ଗ ଖୋଲା ଲୋକ ଅଙ୍ଗ ଦଶେ ଯେବେ ଗୁଳ ବାଜଇ ତତପର ॥
ମୁରୁଚ୍ଚ । ବନାଇବେ ଅବା କ କରି ।
ଯଦି ଦଶେ ମୁଣ୍ଡ ସେହି ଠାକୁ ଗୁଣ୍ଡ ମାରନ୍ତି ନଳ ଯୋଖି ଧରି । ୫ ।
ଆଲା କରି ବାବୁ ଭଲା ବର୍ଚ୍ଛି ଯେ ଚଳାଇ ଆସନ୍ତେ ସାହସେ ।
ଖଣ୍ଡ ଖଣ୍ଡ ହୋଇ ଜମ୍ବୁରା ଛୁଟଇ କ ମରା ଗୋଟିଆଇବେ ସେ ।
ଜଲକା । ଦେଖିଲେ ହୁଅନ୍ତି ଚଳକି ।
ନଳକି ଦାଗି ଦେବାବେଳେ ନୃପତି ସବୁଙ୍କୁ ଲାଗଇ ଭେଲକି । ୬ ।
ଯେଣେ ବାହାରିଲେ ଜଣେ ହେଲେ କାଣ୍ଡ ଗୁଳ ବାଜ ପଡ଼ି ମରଇ ।
ହଟି ଗଲାବେଳେ ଜଗି ବସିଥାନ୍ତି ସାଙ୍ଗୀସାବେଳ କରେ ନେଇ ॥
ହଟିଲେ । ଗଛବୁଦା ତାଙ୍କୁ ରୁହାଡ଼ ।
ଗାଧୋଇବାଠାରେ ଧରିଥାନ୍ତି କରେ ଲୁହାଠେଙ୍ଗା ଭାଲି ଦୁଆଡ଼ ।୭।
ଏହିରୂପେ ଜନ୍ଦ ନୋହି ଡେଡ଼େ ବଳ ଫଉଜ ପଡ଼ିଗଲେ ବନ୍ଧ ।
ଭବାନ କାଳକୁ କେ ସଜାରାମକୁ ଚଉଧୁରିକି କେବା ନନ୍ଦ ।

Digitized by srujanika@gmail.com

:

ଚେମଣା । ବାରୁ ବରସମତ ହୋଇ । :.

ଏହିରୂପେ ବଡ଼ ଝରାଣେ କହିଲେ ସବୁ ସରଦାର ଡକାଇ । ୮ ।

ହିନ୍ଦୀଭାଷା ।

ଅବ ସବ ସରଦାର ବଚ୍ଛରେ । ଏକଟୋ ରଗଡ଼ ହୋତ ନ ଅଁହ୍ମ

ଭଲେ ଭଲେ ତୁମ ଯୃରେ ।

ଛାଲ ଛାଲଭର ପଇସା ଲେକେ କୋଇ ଅବ ମାର୍ ଦୋ କଲ୍ଲା ।

ଥୋଡ଼ା ଗଡ଼ ଚୈକଲଡ଼ନେ ନାହିଁ କ୍ୟା କରୁଁ ଯାକେ ବଙ୍ଗାଲ୍ଲା । ୧ ।

ସ୍ୱଜା ମୁଝେ କ୍ୟା କହେଗା କାମ ନହିଁ ବଡ଼ି ଥୋଡ଼ା ।

ଲଖ ଫଉଜ ଅବ ସାଥ ହେ ମେଗ କେତା ହାତନ ଘୋଡ଼ା । ୨ ।

ଯାତେ ଯାତେ କେତା କଲ୍ଲା ଲିଆ ତୋପକେ ମାରେ ।

ବଶ ବଶ ରୋଜ ସଡଗଇ ପଡକେ କ୍ୟା କହୁଁ ଭାଇ ତୁମାରେ ।୩।

ଲକ୍‌ଲେ ସବ ତୁମ୍ଭ ପାଓଁ ଉ୍ ଠାକେ ମାରନେକୁ କଲକତା ।

ଜୋର ନ ପାଏ ଉଠାଓଁନ୍‌ତିଲ୍ଲ ପାହାଡ଼ତୋଡ଼୍ ମମତା । ୪ ।

ମୁଛ ଦାଢ଼ି ପର୍ ହାଥ୍ ରଖୋମତ୍ କୁଛୁ କାମ ନହିଁ କଥ ।

ବାତ ଶୁନ ବ୍ରଜନାଥ କହେ ସରଦାର ଲୋକ ଜଲଗିହ୍ନା । ୫ ।

ସରଦାରମାନେ ନଵରବଚନେ କହିଲେ ପନ୍ନଗ ପରାଇ ।

ବୋଇଲେ ଶୁନୋ ସ୍ୱଜା ତୁମ୍ କହୋ ଯାହା ମେଗ ଶୁଣାକେସେ ଭାଇ

ବ୍ରାହ୍ମନା । ସ୍ୱଜାସ୍ୱମ ସବୁ ଡବହ୍ନା ॥

କହ୍ନା କାମ ବଦ କହ୍ନା ହୋଓ ରାଜା ସାରାଫଉଜ ଝୁକଦହ୍ନା । ୭ ।

ସବ ଦୁଜଆଙ୍କ ଖୁଦାଇ ଭୁମିହୋ ତୁମାର ପରେହେଁ ଖୁଦାଇ ।

କ୍ଜନାଅଗମ୍ନେଆଜ ଘୋଷା ବହେ ଯୋନ ଫତେ ହୁଆ କାମ ଭାଇ ।୮।

ହାମି ଯୋ । ତୁମାର ତହଦ୍ଧିଲ ବଶ ।

ବଡ଼ି ଖୋରସେ କାମଦେଖୋ ହାମାରା ଖଡ଼େପାଏ ନେହୁଁ ମୁଲୁକ ।୯

ଏମନ୍ତ କହି ସରଦାର ମଜୁରା କର ବାହାରିଲେ ବସାକୁ ।

Digitized by srujanika@gmail.com

ପଦରେ ରାତ ଥାଉଁ ଅଣ୍ଟା ବାନ୍ଧବୁଁ ମୂଳ କଲେ ଏହି ଭାଷାକୁ ।୧୦।
ଭବାନୀ । କାଲେ ମନ୍ଦିବର ତହିଁରେ ।
ବଗ୍ଯରେ କାମହିଁ କଷ୍ଟ ହେବ ନାହିଁ ମାନ ମାରବେ ସରଦାରେ ।୧୧।
ଏଙ୍ଗ ରାଜପୁତ ରୋହିଲ୍ଲା ମୁଗଲ ବଘେଲ ଚୁହାଣ ପଠାଣ ।
ଗଡ଼କୁ ବୋଲି ପଶି ଝାସି ଯିବେ ଯେ ଜଲ ଲଙ୍ଘିବେ କେହି ପୁଣ ।
ମାଭବେ । ରାଜା ଖବରଦାର ବଡ଼ ।
କେତେ ଲୋକ ମଲେ ଏତେବେହେଁ ମରବେ ମାନ ଛୁଟିବେ ନାହିଁ ଗଡ଼ ।୧୨।
ଏମନ୍ତ ବଗ୍ଯର ଦେଲେ ମନା କର ସରଦାରକୁ ଏହା କହି ।
ବଗ୍ଯର ଲଢ଼ିଲେ କାମ ହେବ ସିନା ଲୋକ ମାରବା କାହିଁପାଇଁ ।
ଦ୍ଧ ଦନ । ଆଉ ରହି ଥା ସବୁ କର ।
ଧର୍ମ ଧାଡ଼ୟାକୁ ରାଜାଙ୍କ ସ୍ଥମୁକୁ ପେଷିଲେ ଏହିପର କହି । ୧୩ ।
ଏତେ ଅବଗ୍ଯର କାହିଁକ ତୁମ୍ଭର ହାକମଠାରେ ରିପୁ ଭାବ ।
ଏବେହେଁ ଆମ୍ଭ ଭାଷା ମାନ ଦ୍ଧ ଦନ ଗଡ ତୁମ୍ଭର ଛଡ଼ି ଯିବ ।
କଲଣି । ଏବେ ତୁମ୍ଭେ ଯେଉଁ ଲଢ଼ାଇ ।
ଆଜଯାଏ ଏହା କେହି କରି ନାହିଁ ରଖିଲ ଓଡ଼ଣା ବଢ଼ାଇ । ୧୪
ନୂଆଜ ଆପଣ ଛଡ଼ିଛନ୍ତି ପୁଣ ଯିବେ କି ଗଡ଼ ଫତେ ନୋହି ।
ସାବାସ ତୁମ୍ଭର ବାଦସାରେ ତରୁଆଇ ବାନ୍ଧ କଲ ଲଢ଼ାଇ ।
ଆଜହିଁ । ଗଡ଼ ଅନ୍ତର ହୋଇ ଯିବ ।
ଏମନ୍ତେ କାଲି ଫଉଜ ଉଠିଯିବେ ହାକିମ ମରଜ ରହିବ । ୧୫ ।
ଶୁଣି ନବପଣ୍ଡିତ ନ କଲେ ସମ୍ମତ ବୋଇଲେ ସେ ଦିନା ଚତୁର ।
କଣ୍ଠାପୀ ଯେମନ୍ତ ଦଟାକୁ ଦଅନ୍ତି ସେ ପାଠପଢ଼ା ଅଛି ମୋର ।
ଜଲାଦ୍ରି । ଚନ୍ଦ୍ରମାକିରଣ ପାତକ ।
ତମ କଲ୍ପ ନାଶ ବ୍ରଜନାଥ ଦାସ ହେନ ହେ ରସିକବବେକ । ୧୬ ।

—※—

Digitized by srujanika@gmail.com

## ପଞ୍ଚମ ଛାନ୍ଦ ।

ରାଗ ଆଷାଢ଼ଶୁକ୍ଳ ।

ଏଥି ଉତ୍ତାରେ ଶୁଣ ହେ ସୁମତି । ଗଡ଼ ଛାଡ଼ିବା ଶୁଣି ନରପତି ।
ବିବେକ ପାଦ ମନ୍ତ୍ରୀ ସରଦାର । ଦଳବେହେରା ଯେ ଉତ୍ତମ ନର ।
ସବୁହିଁ ହକାର । ବୋଇଲେ କହ କହ ହେ ବିଚାର । ୧ ।
କାହା ମନକୁ ଆସୁଛି କେମନ୍ତ । କେଉଁ ବିଚାର କରିବା ନିଯୁତ ।
ଲଢ଼ିବା କି ଅବା ଛାଡ଼ିବା ଗଡ଼ । ଦୁଇ କଥାରୁ କେ ବିଚାର ବଡ଼ ।
ଶୁଣି ଏ ବଚନ । କହନ୍ତି କେହି ଶୁଣିମା ରାଜନ । ୨ ।
ଗୋସାଇଁଙ୍କ ପୂର୍ବ ସୁକୃତବଳ । ଅଖଣ୍ଡ ହୋଇ ଥିବାରୁ ପ୍ରବଳ ।
ମନେ ନ ଥିବା କଥାମାନ ହୋଇ । ବଇରି ଶିରେ ଚଢ଼ିକ ପଡ଼ିଇ ।
ଏବେ ଯା ହୋଇଲା । କାହା ମନରେ କି ପରତେ ଥିଲା । ୩ ।
ଯେଉଁ ଲଢ଼ାଇ ହେଲା ନୃପମଣି । ଯେନଲେ ଛାଡ଼ି ହୋଇଯାଏ ପାଣି
ସିନ୍ଧୁକୁ ବାନ୍ଧ ରଖିଛି ଅଟକ । କାହା ବେଳେ ଏ କର୍ମ ହୋଏ ଜାଣ ।
ଯା ନାଗରାବାଡେ । ଉରେ ଥରହର ନୃପତି ଯେତେ । ୪ ।
ଅଠରହନ ଏବେ ହେଲା ସେହି । ଯଶ ତ ଫିଟି ଗଲାଣି ଗୋସାଇଁ ।
ଅଠର ହେଲେଣି ଲଢ଼ିବା ଜର । ଗଡ଼ ଭିତରୁ ହୋଇବା ଅନ୍ତର ।
ଶୁଣି ନରସାଇଁ । ଆଚ୍ଛା ବୋଲି ପୁଣ ଆରକୁ ଚାହିଁ । ୫ ।
ସେ ହାତଯୋଡ଼ି ବୋଲେ ନୃପମଣି । ଶାସ୍ତ୍ରମାନଙ୍କେ ଏହା ଅଛି ଶୁଣି ।
ଯେ ଯାହାକୁ ବଳେ ବଳେ ଅବର । ତା ସଙ୍ଗେ ଅପ୍ରୀତି ନୁହେ ବିଚାର
ଯେବେ ହୋଏ ଦ୍ୱନ୍ଦ୍ୱ । ପ୍ରୀତି କଲେ ପୁଣ ହୋଏ ଆନନ୍ଦ । ୬ ।
ହଉ ବୋଲି ପୁଣ କାହାକୁ ଚାହିଁ । ସେହି ପୁଣି ହାତଯୋଡ଼ି ଜଣାଇ ।
ଏକ ଚରନ ସର୍ବଦା ନ ରହେ । ଆଲୋକେ ଯଥା ଅନ୍ଧକାର ଦହେ ।
କେତେବେଳେ ଯଶ । ହୁଅଇ କେତେବେଳେ ଅପଯଶ । ୭ ।
ଅଠରହନେ ନାହିଁ ଅପଜସ୍ୱେ । ସଂସାରେ ପ୍ରଶଂସା କଲେ ସଭିଏ ।
ଅଭୁ କି କଥା କହିବ ଗୋସାଇଁ । ଯେମନ୍ତ ଅବଧାନକୁ ଆସଇ ।

Digitized by srujanika@gmail.com

ଶୁଣି ବର୍ତ୍ତନଙ୍କୁ । ଗର୍ଭ ହନ୍ଲାଇ କହନ୍ତ ଅନଙ୍କୁ । ୮ ।
ସେ ବୋଇଲା ଯେଉଁ ଜୟ ହୋଇଲା । ତହିଁକ କାରଣ ପ୍ରଭୁଙ୍କୁ ହେଲା ।
ମାଇଲୁଇଁ ଏବେ ମାରବା ପୁଣି । ଏଥକୁ ତଲେ ଭୟ ନାହିଁ ଜାଣି ।
ଭଲା ଭଲା ଏବେ । କରନ୍ତୁ ଆଉ ସେ ଯାହା କରବେ । ୯ ।
ଜନସ ଦାଜା ଆମ୍ଭର ନ ଥାନ୍ତା । ବାରଦ ଗୁଲ ଅବା ସରଥାନ୍ତା ।
ତେବେ ତ୍ରା ହୁଅନ୍ତା ଆମ୍ଭ ଓହର । ବଡ଼େ ନ ଜାଣ କେବଣ ବଗ୍ଭର
ଶୁଣି ଏହି ବାଣୀ । ବୋଇଲେ ଆଉ କେହି କହ ପୁଣି । ୧୦ ।
ଶୁଣି କେ ବୋଲେ ସୀଉକାର କର । ପୃଥ୍ୱୀଥିଲେ ହୋଏ ଯାହା ବିଗ୍ଭର
ସେ ଭୁଜଗଲେ କଣ୍ଟ କରି ନୋହି । ପ୍ରଜାଏ ଥିଲେ ରାଜା ଠେକ ରହି
ସେ ହେଲାଣି ହହି । ଲକ୍ଷ ଲକ୍ଷ ଘୋଡ଼ା ଅଛନ୍ତି ରହି । ୧୧ ।
ଅଛା ବୋଲ କାହା ମୁଖ ତକାନ୍ତେ । ସେ ବୋଲେ ବିଗ୍ଭରନ୍ତି ଏହିମତେ
ଗଡ଼ ଛାଡ଼ି ହନେ ହେବା ଅନ୍ତର । ଏତେକେ ଲେଉଟିଯିବେ ଲସ୍କର
ମୁଲକ ରହିବ । ଯେମନ୍ତ ହବ୍ୟ ଚତ୍ରକୁ ଆସିବ । ୧୨ ।
ଶୁଣି କହନ୍ତି ତହିଁ ଜରସାଇଁ । ଏତେ କଥା କପାଁ କହ ଘୋଡ଼ାଇ ।
ସମସ୍ତେ କହୁଛ ପଲାଇ ଯିବା । କେହିତ କହିଲ ନାହିଁ ରହିବା ।
ମୁଁ ନ ଯିବି ଛାଡ଼ି । ଭଲା କେମନ୍ତେ ମୋତେ ଦେବ ତଡ଼ି । ୧୩ ।
ହଭଆର ବାନ୍ଧଥିବା ଲୋକର । ମରିବାକୁ ଯେବେ ହୋଇବ ଡର
ହଭଆର ଛାଡ଼ି ଘଭ କମାଉ । ତେବେ ତାହାକୁ କ କହିବା ଆଉ ।
ନସତ ଜୀଇବା । । ଘନ୍ଦୀଙ୍କ ଶୋଭ ରଣେ ପ୍ରାଣ ଦେବା । ୧୪ ।
ଭୀମ ଅର୍ଜୁନ ଦ୍ରୋଣ କର୍ଣ୍ଣବୀର । କାହିଁ ଅଛନ୍ତିଟି ଘେନ ଶରୀର ।
ଯଶହିଁ ମାନ୍ଦ ଯାଇଅଛି ରହି । ନାମରଦଙ୍କୁ କେ ଭୁଚ୍ଛେ ବସାଇ ।
ଏହା ନ ଘେନଲ । ଗଡ଼ ଛାଡ଼ ଛାଡ଼ ସମସ୍ତେ ବୋଲ । ୧୫ ।
କାହାର ପୃଥ୍ୱୀକେ ସଙ୍ଗରେ ନେବ । ଯଶ ଅପଯଶ ଦୁଇ ରହିବ ।
ଯେତେ ରାଜା ଗଲେ ପୃଥ୍ୱୀ ନ ଯାଇ । ଦୁଇ କଥାରେ ନାମ ରହିଥାଇ
ଦାତା ଶୁରପଣ । ଏ ଦୁଇ ବନା ନାମ ନୋହେ ଜାଣ । ୧୬ ।

Digitized by srujanika@gmail.com

ଦେଶ ହୋଇଅଛି କେତେ ମଉଜ । ଲଗି ରଖିଥାଇ କେତେ ଫଉଜ ।
କମର ବାନ୍ଧିଥାଇ ଦିନ ରାତ । ଏଥୁଁ କି ବଡ଼ ବାସବସମ୍ପତ୍ତି ।
ଶୁଣି ଉଠେ ଫୁଲ । କେମନ୍ତେ ବୋଲ ଗଡ଼ ଛାଡ଼ ବୋଲ ॥୧୭॥
ଫଉଜ ଭିତରେ ଘୋଡ଼ା ପକାଇ । ମାରେ ବରଛା କରିଭଣ୍ଡ ହୋଇ ।
ସ୍ୱର୍ଗ ପରାପ୍ତେ ପଶି ଝାସିଯିବ । ଫେରି ଆଇଲେ ଜସ ସକଳ ଲଭିବ ।
କୋହଲେ ଯେ ମଲେ । ବାସବ ସଙ୍ଗେ ଯେ ବସିବ ଭଲେ ।୧୮।
ହାତ ଉଠାଇ ଯେ ମରିବ ବୀର । ତାହାକୁ ମାନ ସେହୁ ପଟାନ୍ତର ।
ରଣେ ଯା ଦେହ ହୋଏ ଛିନ୍ନଭିନ୍ନ । ତାହାର ଅଟଇ ସୁଫଳ ଜନ୍ମ ।
ଯେ କସତ ହୋଏ । ପୁରୁଷ ହେଲେ ସେ ଯୁବତୀ ପ୍ରାପ୍ତେ । ୧୯ ।
ବୋଳ ଅଙ୍ଗରେ କର୍ପୂର ଚନ୍ଦନ । ମଣ୍ଡି ହୋଇଥିବ ହେମ ରତନ ।
ଘରେ ଥିବ ଶତ-ପତ୍ନ ସମ୍ପତ୍ତି । ରକତ ଦେଖି ଭୁଲୁକେ ଯା ଛାତି ।
ସେ ମନୁଷ୍ୟ ହାନି । ଭୋଗ କୋହେ ତାର ରୋଗ ସମାନ । ୨୦ ।
କାହିଁକି କଣ୍ଠାବଳେ ଏଥି ଥିବା । ଗଳ ଡାଲ ଖଣ୍ଡା ହୋଇ ମିଶିବା ।
ହରବୋଲ ଯାସୁଁ ଯେହେବ ହେଉ । ଏତେ ବଗ୍ରରରେ କି ଫଳ ଆଉ ।
ଏହୁ କଥା ମୂଳ । କେ ସହିବ ବରଗିଙ୍କ ଜଞ୍ଜାଳ । ୨୧ ।
ଲେଉଟର ଗୁଡ଼ କହୁଣିକ ଗଲେ । କେମନ୍ତ ଘଟଣ ହୁଅଇ ଭଲେ ।
କର ସାରେଣି ଗୁଣ ଗଲେ ଛୁଡ । ହାତକୁ ଆସଇ କି ଯେବେ ମୋହ
ବରଗି କପଟ । ଜାଣିନାହିଁ ତାଙ୍କ ହୃଦର ନଟ । ୨୨ ।
ତାଙ୍କ ଭାଷାରେ ଗଡ଼ ଛାଡ଼ ଯିବା । ଶ୍ୱେରଙ୍କ ପର ଅରଣ୍ୟେ ବୁଲିବା ।
ତହିଁ ଉତ୍ତାରୁ ଗଡ଼ କର ଫତେ । ବୋଲିବେ ଠକ୍କା ବୁଝିଦିଅ ମୋତେ
ତେତେବେଳେ ଯାଇଁ । କ ବୁଝିବି ଏହା ଜକହ କିପାଇଁ । ୨୩ ।
ଯନ୍ତ୍ର ଅନ୍ଧତ ବାଲି ହୋଇ ଥିବ । ସେ ପୁଣି ହାତ ଗୁଣ୍ଡାରେ ପଶିବ ।
ତେତେବେଳେମନେପଡ଼ିବସିନା । ଯେହେବିଏତେବେଳେ ହେଉ କିନା ।
ନ ଛାଡ଼ିବା କଣ୍ଠା । କଥାଟ ରହିଯିବ ଭଣ୍ଟା ଭଣ୍ଟା । ୨୪ ।

Digitized by srujanika@gmail.com

:

ଏମନ୍ତ କହି କ୍ରୋଧେ ଗୁରୁତର । ମୁରୁଗୁଙ୍କୁ ତହିଁ ଦେଲେ ଖବର ।
ତାହାର କହିବା ଯୋଗ୍ୟତା ନୋହେ । ନବର୍ତ୍ତି ରହିଲେ ପାଣ୍ଡ ମନ୍ତିଏ
କେ କହିଲେ ହେଉ । ସବୁ ଦଳେତ ନଜୀଇବା ଅଉ । ୨୫ ।
ନଗରଦଗେ ଏ ଖବର ହେଲା । ରାଜା ସାହେବଙ୍କୁ କେବଣା କଲା ।
ନରେନ୍ଦ୍ର ସାହେବ ଶୁଣ ଚଉଁତ । ଭାଙ୍ଗି କହିବାକୁ ନୋହେ ଶକତ।
ସକଳେ ବିଷାଦ । ବର୍ଗିରନ୍ତ ହେଲା କି ପରମାଦ । ୨୬ ।
ମନ୍ତ୍ରିମାନଙ୍କ ହେଲେ ଅବାରଣ । କାହାବଳେ କି ଧରି ଯାଏ ପୁଣ ।
ଅହାରେ ଅଣ୍ଡାସି ଛୋପରେ ଧୀରେ । ଯେମନ୍ତେ ଧରନ୍ତ ନାନାବିଧିରେ।
ଏହିମତ ଦିନା । ମନ୍ତ୍ରଣା ଉପାୟି କଲେ ଘଟନା । ୨୭ ।
ତଥା ଉଙ୍ଗିରେ ଦେଖାଇ ଜଣାନ୍ତ । ନବରୁ ହେଲା ପର୍ଯ୍ୟନ୍ତ ସମ୍ମତ ।
ଦ୍ୱିଦନ ଯିବା ଗଡୁଁ ଦୂର ହୋଇ । ବର୍ଗିର ଏଠାରେ ରହି ଗୋସାଇଁ ।
ସେ ନ ଯିବେ ଯେବେ । ମୁଲକ ମାଟିତ ଖୋଳ ନ ନେବେ । ୨୮ ।
ଠାବେ ଠାବେ ମିଳ କରିବା ହାଲ । ଦାନ ନ ପାଇ ହେବେ କଲବଲ ।
ଘାଟ ବାଟ ଖଣ୍ଡି ଜଗିବା ଯତ୍ନେ । ରସ୍ତା କେମନ୍ତେ ଚାଲିବେଟି ଅଉ ।
ଦ୍ରବ୍ୟ ଚତ୍ରେ ଘେନ । ଛାଡ଼ିଯିବା ମାଣ ଗଡ଼ ଦ୍ୱିଦନ ।୨୯ ।
ସାତ କଥାରେ ଭୁଲେ ପରି ସଭା । ତେତେବେଳେ କଲେ ରାଜାସମ୍ମତ
ତାହାଲୁଟି କେତେ ଲଙ୍ଘିବେ ପୁଣ ।ଛାଡ଼ିଗଲେ ଏହିରୂପେ ସେ ଜାଣ ।-
କୃଷ୍ଣ ପଦ୍ମପାଦ । ଚନ୍ଦ୍ର ବ୍ରଜନାଥ ନାଶେ ବିଷାଦ । ୩୦ ।

---

## ଷଷ୍ଠ ଛାନ୍ଦ ।

ରାଗ ଘଣ୍ଟାରବ ।

ଏବେ ଶୁଣ ଧୀରମତି । ଗଡୁଁ ପଳାନ୍ତେ ନୃପତି ।
ପଛେ ବର୍ଗିର ଫଉଜେ ଉଠିଗଲେ ଏଅନ୍ତେ ହେଲା ଯେ ସାତ । ୧ ।
ଯେଉଁ ଯେଉଁ ଖଣ୍ଡାଇତେ । ମିଳ ବରଗି ସଙ୍ଗତେ ।
ଶତ୍ରୁ ହୋଇ ଢେଙ୍କାନାଳେ ଲୁଟୁଥିଲେ ବର୍ଗିରନ୍ତ ତହିଁ ତତ୍ରେ । ୨ ।

Digitized by srujanika@gmail.com

ଧନ୍ୟ ଢେଙ୍କାନାଳପତ୍ତି । ଧନ୍ୟ ତାଙ୍କ ଧୈର୍ଯ୍ୟ ମତି ।
ରାଜା ମହେନ୍ଦ୍ର ବାହାଦୁର ପଦ ତ ଜାଣି ଦେଲେ ଗଜପତି । ୩ ।
ଧନ୍ୟ ଧନ୍ୟ ତାଙ୍କ ପୁଣ୍ୟ । ବସ୍ତ୍ରର ତାହାଙ୍କ ଧନ୍ୟ ।
ସାଗରଭିତରେ ପଶି ପାର ହେଲେ ଧନ୍ୟ ଧନ୍ୟ ତାଙ୍କ ଗୁଣ । ୪ ।
ଆମ୍ଭମାନଙ୍କ ବସ୍ତ୍ରର । ହେଲା କେଡ଼େ ଅସୁନ୍ଦର ।
ପ୍ରୀତିରେ ଅପ୍ରୀତି କେବଳ କଲାଇଁ କାର୍ଯ୍ୟ ନାହିଁ କଡ଼ାକର । ୫ ।
ତାଙ୍କ ସଙ୍ଗତେ ଅଭାବ । କରିବାରେ ନାହିଁ ଲାଭ ।
ଯେନ ଏହ୍ମମତି କଲେକ ପୀରତି ମନୁ ତେଜି ଆନ ଭାବ । ୬ ।
କେ ଦ୍ୱାର ସିଠ ପେଶିଲେ । କେହ୍ନୁ ଆପଣେ ଆସିଲେ ।
କେ ନାନା କଉତୁକ ଚଳ ଦେଇ ଲୋକ ପେଶି ମାନସ ତୋଷିଲେ । ୭
କେ ଦେଇ ଯୁଝା ଚଢ଼ାଇ । ବମକ ଦେଲେ ଛଡ଼ାଇ ।
ଏହ୍ନରୂପେ ନାନା ପ୍ରୀତିରେ ଭାବନା କଲେ ନ ରଖି ବଢ଼ାଇ । ୮ ।
ସମସ୍ତେ କଲେ ପୀରତି । କେନ୍ଦୁଝର ନରପତି ।
କେବଳ ଅପୀରତି କରି ଦ୍ୱନ୍ଦ୍ୱଜାଣ୍ଟି ଆରମ୍ଭିଲେ ନରପତି । ୯ ।
ରକ୍ଷଣ ଆଉ ନ ଦଶେ । କହନ୍ତୁ ଯା ସେହୁ ଅସେ ।
ତେମଣା ବାବୁଙ୍କ ଯୁଦ୍ଧ ଦେଖୁ ଦେଖୁ ବାଇଶି ଯାହା ଦେଲେ ସେ ।୧୦
ସଇନ କଲେ ତଆର । ସଙ୍ଗେ ଦେଇ ସରଦାର ।
ସୀମାପାଖ ଲାଗି ଛପି ରାତି ଜଗି ଗ୍ରାମମାନ କଲେ ଜୁର । ୧୧ ।
ଶୁଣି ଏହା ମହାରାଜ୍ୟ । ବୋଇଲେ ନୁହ ଅଥଯ୍ୟ ।
ତାଙ୍କର ଆମ୍ଭର ପ୍ରୀତିକ ମାତର ସାକ୍ଷୀ ଅଛଇ ଗୋଷ୍ଠାଏ । ୧୨ ।
ଆଗକୁ ଆଉର ନୁହ । ଦୁଇ ଗୃହ ଯନ୍ତ ସହ ।
ଘଡ଼ିକେ ତାଙ୍କୁ ମୁଲକୁ ତଡ଼ିଦେବା ଛାଡ଼ିଯିବ ସବୁ କୋହ ।୧୩ ।
ଯିବାପାଇଁ କେନ୍ଦୁଝରି । କାଣ୍ଡ ଗୁଳନାଡ କରି ।
ଯୋପଡ ହଜାର ପାଞ୍ଚଶତେ ଆର ଲାଉ ଯିବ କେନ୍ଦୁଝରି । ୧୪ ।

Digitized by srujanika@gmail.com

ପୂର୍ବରୁ ମୁଁ ଏହା କହି । ଲୋକଥିଲେ ପଠିଆଇ ।
ହୁଇ ଘୋଡ଼ା ଯେବେ ଦେବାହେବୁଁ ତେବେ ତାଙ୍କ ଅସ୍ତ୍ର ସଜ୍ଜ ଯାଇ । ୧୫ ।
ଏହା ଓକୀଲ କହିଲା । ତହିଁକି ଏଣୁ ପଡ଼ିଲା ।
କାହିଁପାଇଁ ଏହା ନ କହିବେ ସେତ ହଇବେ ଅନ୍ତ୍ର ପିନ । ୧୬ ।
ଓକିଲ ଏହା ଶୁଣିଲା । ତାଙ୍କ ରାଜାଙ୍କୁ କହିଲା ।
ଫୋପଡ଼ କଥା ହିଁକି କରୂପେ ଯାଇଁ ପୁଣି ଗୋଚର ହୋଇଲା । ୧୭ ।
ହଇବେ ନୃପତି ସେ ତ । ଶୁଣି ଏ କଥୁଭାଷିତ ।
ବୋଇଲେ ମୋ ରାଜ୍ୟ ବୁଝୁ ପଛେ ସାଜ ସକଳ ସୈନ୍ୟ ଭୁରିତ । ୧୮ ।
ବନ୍ଧା ଟଙ୍କା ଦଶ ଭାର । ମଇନା କରି ଚାକର ।
ତେଲଙ୍ଗା ଗାରଦଂ ଅନେକ ରଖିଲେ ବାଛି ହବ୍ୟ ଅଶୁଆର । ୧୯ ।
କାଣ୍ଡ ଗୁଳା ହାରୁ ଗୁଳ । ଚାଉଳ ବରି କଦଳ ।
ଛମାଖୁ ଲୁଣ ଅହ ଆଗ ସେ ବିଚିହ୍ନ ପାଲଠାକୁ ହେଲେ ଚାଲ । ୨୦ ।
ଲୋକ ଶତପାଞ୍ଚ ସାତ । ଅଇଲେ ତହିଁ ସଙ୍ଗତ ।
ଘୋଡ଼ା ମୁରୁଚ ଦେବାପାଇଁ ବେଠିଆ ଆସିଅଛନ୍ତି ବହୁତ । ୨୧ ।
ଅଶୁଆର ଦଶ ବାର । ମିଳଲେ ଆସି ସେଠାର ।
ଲୁଟିବେ ଲଢ଼ିବେ ମୁଲକ ପୋଡ଼ିବେ କରିଛନ୍ତି ଏ ବିଚାର । ୨୨ ।
ଏହା ରଜନ ଶୁଣିଲେ । ବ୍ୟବର୍ତ୍ତିଙ୍କୁ ବିଦା କଲେ ।
କଛି ଶୁଆର ଜମାଦାର ଫଉଜ ଯିବାପାଇଁ ଆଜ୍ଞା ଦେଲେ । ୨୩ ।
ପାଞ୍ଚୁ ପାଞ୍ଚୁ ତାଙ୍କ କୁଟ । ଆଗହୁଁ ହୋଇଲେ ଭେଟ ।
ହେଟଣା ହେଲା ପରି କେତେ ମଲେ ସେ କେତେ ଧନ ହେଲା ଲୁଟ ॥
ଜଣଜଣଙ୍କେ ବିଚାରି । ମାରି କେ ଆଣିଲେ ଧରି ।
ଏ ହନ ଛମୋଇ ଘୋଡ଼ାକୁ ସିପାହୀ ବେବର୍ତ୍ତ ଆଣିଲେ ମାରି । ୨୫ ।
ଘୋଡ଼ା ହତିଆର ମୁଣ୍ଡ । ଆଣିଲେ କଲ ପ୍ରଚଣ୍ଡ ।
କେତେଖଣ୍ଡ ଖଣ୍ଡ ହେଲେ ବାଙ୍କକାଣ୍ଡ ଗୁଳ ଗୋଳାଲା କା ପେଣ୍ଡ । ୨୬ ।

Digitized by srujanika@gmail.com

ଲୁଟି ହୋଇଲା ଅନେକ । ତାଙ୍କ ସରଞ୍ଜାମ ଯାକ ।
ତବା ଦଉଡି ଗୋଟିଏ ଯାଇଥିବେ ବାର୍ତ୍ତା କହିବାକୁ ଲୋକ । ୨୭ ।
ଏତେକେହେଁ ନ ଚେତିଲେ । ଅପଣେ ରାଜା ପଳାଇଲେ ।
ପଲାଶୁଣି ଗଡ଼ ଲଢ଼ାଇରେ କେତେ ତେଲଙ୍ଗା ଗିରାଇ ଗଲେ । ୨୮
ଯାଇକେ ଅସନ୍ତେ ଛାଡ଼ି । ଗଡ଼ି ମାଝ ଦେଲେ ଯୋଡ଼ି ।
ଯହିଁ ଯେତେ ଜନ ଅସିଛନ୍ତି ସେ ଯେ ଭଙ୍ଗଯାନ୍ତି ଉଠିପଡ଼ି । ୨୯
ପୁଣି ଗଲେ କେତେ ଦିନ । ସାଜ ତାଙ୍କ ସବୁ ସୈନ୍ୟ ।
ତମ୍ଭୋଇଠାରେ କଲେ ଯାଇଁ ଲଢ଼ାଇ ତହିଁ ହେଲେ ଯେତେ ଷ୍ଣିନ
ଲୋକ ଦଶ୍ବରି ହଜାର । ପଞ୍ଚାଶ ଷାଠି ଶୁଆର ।
ନଗଦ ଚାକରମାନଙ୍କୁ ଅପାର ଆଣିଥିଲେ ସଙ୍ଗତର । ୩୧ ।
ତଳାଇ ଅସନ୍ତେ ତେଣୁ । ଲୋକ ପନ୍ଥୁଆଇ ଏଣୁ ।
ହାତ ଗୋଡ଼ ଘୋଳ ହେଲା ଏହାଙ୍କର ତାଙ୍କୁ ମିଶି ହାଣୁ ହାଣୁ । ୩୨
ନ୍ୟବର୍ତ୍ତା ସେଦିନ ଆସି । ଉତରେ ଘୋଡ଼ାରେ ଝାସି ।
ମାତି ତରୁଆର ଏକ ଖଣ୍ଡୁଆର ଦେଲେ ଯମପୁର ପେଷି । ୩୩ ।
ପଳାଇଲେ ଛାଡ଼ି ରଣ । ନ ଅଣ୍ଟିଲା ଗିରି ବନ ।
କେତେ ଲୋକ ଅବା ଛାଡ଼ି ହତିଆର ପଳାଇ ଲେ ଘେନି ପ୍ରାଣ । ୩୪
କେବଳ ତାହାଙ୍କୁ ଏତେ । ଲୋକେ ବୋଇଲେ ଜଗତେ ।
କେନ୍ଦୁଝରି ରାଜା ଧର୍ମଲଙ୍ଘିଲା ହୋ ଯଶ ମିଳବ କେମନ୍ତେ । ୩୫ ।
କେ ବୋଲେ ସେ ଅସୁବୁଦ୍ଧି । କଲେ ଝାଡୁଆଙ୍କ ବଧି ।
ପୀଢଠାରେ ସେ ଯେ ଅପ୍ରୀଢ ହୋଇଲେ କେଉଁ ସହବଟି ବଧି । ୩୬
ପରଜା ହେଲେ ଉଚ୍ଛନ୍ନ । ରାଜ୍ୟ ହେଲା ଛନ୍ନ ଭିନ୍ନ ।
ବୋଲେ ବ୍ରଜନାଥ ବଡ଼ଯେନା ଏଥୁ ବ ଯଶ ହେଲାଟି କ୍ଷୀଣ । ୩

---

Digitized by srujanika@gmail.com

## ସପ୍ତମସ୍ତବକ ।

### ରାଗ କେଦାରକାମୋଦୀ ।

ଶୁଣ କହିବା ପୁଣ ଯେଉଁ ଚରିତ । ଗୁଣଗ୍ରାହକ ବିଚକ୍ଷଣ ପଣ୍ଡିତ ହେ । ସମରତରଙ୍ଗ ଏ ଗୀତର ନାମ । ଯେବା ମରଦ ଲୋକ ସେହି ଯୋଗ୍ୟ ହେ ।୧ ରାଜା ମୃଦେନ୍ଦ୍ରବାହାଦୁର ଏ ପୁଣ । ନାମ ନ ବାଜ ପୃଥ୍ୱୀ ଅଛି କ ଯେନ୍ ହେ । ସମରେ ଗଣେ ବୀର ଅର୍ଜୁନ ସଙ୍ଗେ । ଭୀମ ସଙ୍ଗରେ ବଳବନ୍ତ ସେ ଅଙ୍ଗେ ।୨। ମନୋହର ଛବି ଅତି ନିଶ୍ଚଳ । ଚନ୍ଦ୍ରର କଳା ପ୍ରାୟ ଶାନ୍ତ ଶୀତଳ ହେ । ଶୋଭାରେ ଜାତ ହବା ନବୀନ କାମ । ପ୍ରଭାରେ ଚଣ୍ଡକର ତେଜ ସମାନ । ୩ । ଦାନୀରେ ବଳି ରାଜା ଉପମା ଦେଇ । ମାନୀରେ ପର୍ଶୁରାମ ପର୍ଯ୍ୟେ ହୋଇ ହେ । ସ୍ନେହରେ ନବନୀରୁ ଅତି କୋମଳ । କ୍ରୋଧରେ କି ଅବା ଜଳନ୍ତା ଅନଳ ହେ ।୪ ଛିତରେ କଳ୍ପଲତା ପର୍ଯ୍ୟେ ପୁଣି । ଶାକର ପ୍ରାୟ ସ୍ୱାଦୁ ଯାହାଙ୍କ ବାଣୀ ହେ । ଠକ ଠାପୁଆ ଲୋକମାନଙ୍କ କାଳ । ସାବ୍ୟକରନ୍ତି ଯେହୁ ହୋଏ ପ୍ରବଳ ହେ ।୫। ସହିବାପଣରେ ସେ ମହା ଦଦୃଢ । ଗୁହ୍ଣିବା ମାନବେ କେ ନୋହିବ ବଶ ହେ । କହିବା କଥା ଯାର ମନ ମୋଦକ । ବହିବା ମନ ଦୁଃଖକୁ ସେ ବିବେକ ହେ ।୬। ଇଙ୍ଗିତ କରିଛି ଯା ନୟନେ ପୁର । ସଙ୍ଗୀତ ଗୀତରଙ୍ଗେ ଅତି ଚତୁର ହେ । ଭଙ୍ଗୀତ ସେହି ଠାରେ ଅଛି କେବଳ । ଜଙ୍ଗିତ ଭାଙ୍ଗି ଦ୍ୟନ୍ତି ବଇରୀକୁଳ ହେ । ୭ ପକ୍ଷ କଲେ ମୁଲକଯାକ ହିଁ ଦେବେ । ଶକ୍ୟ କେଉଁ କଡ଼ାଏ ନେବ ଅଲ୍ପବେ ହେ । ଅକ୍ଷତାଳନ୍ତି କୃପା କରି ଯାଠାରେ । ଲକ୍ଷ ଲକ୍ଷ ସେ ସୁଖ ପାଇ ବିହରେ ହେ । ୮ । କୋପରେ ପରିପୂର୍ଣ୍ଣ ହୋଇ ସେ । ନେତ୍ର । ଯା ପରେ ପଡ଼େ ବୁଡ଼ିଯାଏ ତା ଗୋତ୍ର ହେ । ତା ପରେ ଅବଶ୍ୟହିଁ ଦସ୍ଯୁ ବଦନ୍ତି । ନୃପରେ ନାହିଁ ଏସମାନେ ଭୂଷିତ ହେ । ୯। ଏହି ପ୍ରଭୁଙ୍କ ଆଠ ପୁରୁଷ ଲୋକ । ମୁହିଁ ଅଟଇ ଏହା ଜାଣନ୍ତି ।

Digitized by srujanika@gmail.com

ଲୋକ ହେ । କାହିଁ ଏ ଛନା ଆଉ ଗଡ ନ ଥାଏଂ ।। ମହୀମଣ୍ଡଳେ ଜଳ ଗ୍ଭଜକ ପ୍ରାଯ୍ୟେ ହେ ।୧୦। ଘେନଥିବାରୁ ପ୍ରଭୁମାନଙ୍କୁ ତୋଷେ। ମୁନମ କାର୍ଯ୍ୟ କରୁଥାଇଁ ପୌରୁଷେ ହେ । ଅଦ୍ୱନଂଶିରେ କର ଅନୁ-ସରଣ । ଛମ୍ର ସଂସର୍ଗେ ଯେନ ହୋଇଲା ଗୁଣ । ୧୧ । ଅଗ୍ରଜ ଗୋପୀନାଥ ପଟ୍ଟନାୟକ । ଗୁଣବନ୍ତରେ ତାଙ୍କୁ ଗଣନ୍ତ ଲୋକ ହେ । ତାଙ୍କ ସମସ୍ତ ଗଲା ସଦାଚରଣେ । ଅନ୍ତେ ପଡିଲେ ସଦାନନ୍ଦ ଚରଣେ ହେ ।। ତାଙ୍କ ଅନୁଜ ଜଗନ୍ନାଥ ଯେ ନାମ । ଗୁଣବନ୍ତେ ଯେ ରାଜକାର୍ଯ୍ୟରୁ କ୍ଷମ ହେ । କବିଭୂଷଣ ପଟ୍ଟନାୟକ ପଦ । ଏଥୁଁ କବିତା ଶକ୍ତି ଜାଣ କୋବିଦ ହେ ।୧୩। ଗୁଣବନ୍ତେତ ମୁହିଁ ଜଣା ନ ଯାଇ । ସତେହେଁ ତେତେ ଶକ୍ତି ମୋହର କାହିଁ ହେ । ତଥାପି ଗୁଣଗଣ ଅନୁସରଣେ । କବିତା କରଥାଇ ପଦେ ଚରଣେ ହେ ।୧୪। କେହୁଁ ଗୀତ ସଦୋଷ କେହୁ ନିର୍ଦ୍ଦୋଷ । କେ ରସପୁର କେବା ହୋଏ ନୀରସ ହେ । କେ ଗୁରୁସ୍ଥାନେ ଲଘୁ କେ ଲଘୁ ଗୁରୁ । କେ ବର୍ଣ୍ଣ ଅଯୁକ୍ତହିଁ କେ ପୁଣ ଗୁରୁ ହେ । ୧୫ । ରାଜା ମହୀନ୍ଦ୍ର ବାହାଦୁରଙ୍କ ସଭା । ତୁଳକସଠ ପ୍ରାଯ୍ୟେ ଅଟଇ ଶୋଭା ହେ । ଆରକତରଜତ ଭୁଦନ୍ତ ସୁନା । ଭେଟି ରତନମାନ ସକଳ ଚହ୍ନା ହେ । ୧୬ । ତହିଁ ଭିଡିଲ କସ ହୋଇଲା ଗୁଣ । ନିର୍ଦ୍ଦୋଷେ ଜଗତେ ସେ ହେଲେ ଭୂଷଣ ହେ । ଏ ସଭାରେ ସନ୍ତତ ଥିବାରୁ ମୁହିଁ । ଗୀତ କବିତା ବୋଲି କବି ବୋଲାଇ ହେ ।। ସଂସ୍କୃତ ପ୍ରାକୃତ ଶୋରଠା ବୋଲି । ନାନା ଭାଷାରେ ଗୀତ କବିତା କଲି ହେ । ବିବିଧ ଚଉପଦୀ ଇତ୍ୟାଦିଶାହିଁ । ବୋଲି ଛନ୍ଦ ପ୍ରବନ୍ଧ ବୋଲିଛି ମୁହିଁ ହେ । ୧୮ । ସକାରେ ଛାନ୍ଦ ମାନ୍ଦା ଭୁଭ ଚୂର୍ଣ୍ଣିକା । କଥାବର୍ଣ୍ଣନା ନାନାଦ କଉତୁକ ହେ । ଉଗଉମାଳିମାନ ଗୁଳକ ଗୀତ । ବ୍ରଜମୋହନ କେଳଯୁକ୍ତ କବିତ୍ୱ ହେ ।୧୯। ତନ୍ତ୍ର କଲମେ ପୁଣ କରଛି ଶ୍ରମ । ତାଳପତ୍ରେ କାଗଜେ ଅକ୍ଷର କମ ହେ । ରୂପ

Digitized by srujanika@gmail.com

ତବରେ ନାନା ପଂଟ ପୁସ୍ତକ । ଲେଖା ଦେଖି ଆନନ୍ଦ ହୁଅନ୍ତି ଲୋକ ହେ । ୨୦ । ଯେହ୍ନେ ଅବା ମୋହର ହୋଇଲା ଗୁଣ । ତହିଁକି ମାହେ ଶିନା ପ୍ରଭୁ କାରଣ ହେ । କରିବ ମୁହିଁ ଅବା କେଉଁ ପ୍ରଶଂସା । ସଂସାରେ ଖୋଜିଲେହ ନ ମିଳେ ଭାଷା । ୨୧ । କବିମାନେ ମିଛେହେଁ ଗୀତ ବୋଲନ୍ତି । କାର୍ଯ୍ୟ ଲଭିବାକୁ କେ ସ୍ତୁତି କରନ୍ତି ହେ । ଶ୍ରୀଛାମୁଙ୍କ କଥା ମୋର ନୋହେ ଏମନ୍ତ । ଅନ୍ତର୍ଯ୍ୟାମୀ ଜାଣନ୍ତି ମୋହର ଚିତ୍ତ ହେ । ୨୨ । ଘନ ନାଦ ଶୁଣିଲେ ଯେହ୍ନେ ମୟୂର । ଆନନ୍ଦେ ନୃତ୍ୟ କରେ ହୋଇ ଅସ୍ଥିର ହେ । ସେରୂପେ ଛାମୁ କାର୍ଯ୍ୟେ ଲୋଭି ମୋ ମନ । ନଷ୍ଟେ କହୁଛି ନୋହେ ମିଥ୍ୟାବଚନ । ୨୩ । ବହୁତ ରାଜ୍ୟମାନ ଦେଖିଛି ମୁହିଁ । କେତେ ରାଜାମାନଙ୍କୁ ଭେଟିଛି ମୁହିଁ ହେ । ଅନେକ ରୂପେ ମୋତେ କରନ୍ତି ଦାନ । ତଥାପି ସେ କ ମୋର ପ୍ରଭୁ ସମାନ ହେ । ୨୪ । କେଉଁ ରାଜା ସୁନ୍ଦର ନ ଥାଇ ଗୁଣ । ଯେ ଗୁଣ ଥିଲେ ନୋହିଥାନ୍ତି ପଣ୍ଡିତ । କେ ସୁନ୍ଦର ହେଲେହେ ନୁହନ୍ତି ଶୂର । କେ ଶୂର ହେଲେ ଯୁଝିବାକୁ ଅଧୀର ହେ । ୨୫ । ବୁଝି ପାରନ୍ତି ଯେବେ ଅମଳ ବଂଶ । କେ ଅବା ଦାତା ହେଲେ ତାଙ୍କର କ୍ଳେଶ ହେ । କେ ଧନବନ୍ତ ଭେଟ ନୁହେ ତାଙ୍କର । କେ କାଙ୍କ୍ଷ ବଶେ ପଡିଥାନ୍ତି ଉତର ହେ । ୨୬ । କହନ୍ତି ଯାହା କେ ତା କରନ୍ତି ନାହିଁ । କେ ସତ କହେ ଗୁଣେ ସତ ନ ପାଇ ହେ । କେ ପୁଣ ଘେନଲେ ତା ପାତ୍ର ପ୍ରବଳ । ଦୁଇଶ ଦେଲେ ଶଏ କରଇ ମୂଳ । ୨୭ । ଅମଳ ବଶ କେହୁ ନାଗରେ ବଶ । ଆହାରେ ବଶ କେ ହୁ ନିଦ୍ରା ଆବେଶ ହେ କେ ପାନେ ବଶ କେ କୁବଶ ଲୋକରେ । କେ ଖେଳବଣ କେହୁ ଗୀତ ନାଟରେ । ୨୮ । କଲା ସକଳ ଗୁଣଗଣ ମନ୍ଦର । ସିନ୍ଧୁ ପରାଏ ଯାର ହୃଦ ଗମ୍ଭୀର ହେ । ମାଉବା ଭାରିବାର ଏ ଗୁଣ ଦୁଇ । କେନ୍ହେ ଥୋଇ ଗଢିଲା ପଦ୍ମ ପରାଇଁ ହେ ।୨୯। ପିୟୂଷ ବିଷ ଯୋଗେ ହାସକୁ

Digitized by srujanika@gmail.com

ଦେଲା । ଅଧର ଅରୁଣକୁ ଯାହା ରଚିଲା । ଅନେକଗୁଣେ ନିର୍ମିଲି ଶଙ୍କର । ବଇଷ ବାଲ ନୁଅ ଦେଲା ଏ ବର । ୩୦ । ପୁଣି ତହୁଁରେ ଢାଲ ଖଣ୍ଡାକୁ ଦେଇ । କହିଲା ଘଡ଼ିକୁଲ ପକାଅ ଦହି । ପୁଣି କହିଲା କୁଶପାଣିକୁ ଧେନ । ଦ୍ୱିଜକୁଲକୁ ଦାନ କର ମେଦନୀ । ୩୧ । ପୁଣି ବୋଇଲା ବଜ୍ର ପରାପ୍ତେ ହୋଇ । ଦେବ ପ୍ରବଳ ମାଲବଳକୁ ଦହି । ପୁଣି କହିଲା ହୋଇ ଚମ୍ପକମାଳା । ମୋହିବ କାଣ୍ଟ ମଣ୍ଡି ପଦ୍ମିନୀଗଲା ହେ । ୩୨ । ପୁଣି ବୋଇଲା ଧନୁଶରକୁ ଧର । ଯେଉଁ ରାଜ୍ୟକୁ ଯିବ ନେବ ତା ମାର । ପୁଣି ବୋଇଲା ଧର ବାଗ ବରଚ୍ଛା । ଜିଣି ନେବ ଭୂମିର ଯାହାକୁ ଇଚ୍ଛା ।୩୩। ପୁଣି ବୋଲେ ଧଇଲେ ପଦ ଲେଖନ । କୋଟି କୋଟି ସମ୍ପଦ ହେବ ଅର୍ଜନ । ପୁଣି ବୋଇଲା ଯାହା ଚିରେ ଲାଗିବ । ତାକୁ ସମ୍ମୁଖ ହେବ ମୁହିଁ ଦଇବ । ୩୪ । ପୁଣି ବୋଇଲା ଅନ୍ତ ଦେବ କି ବର । ଯାହା ଚିନ୍ତା କରିବ ସେ କାର୍ଯ୍ୟ କର । ଏବେ ସୂତତ୍ତ୍ୱେ ଅସୁ ଦେବେକଂ କରେ । ନୃପମଣ୍ଡଳ ଦନେ ହଦଗଡ଼ରେ ।୩୫। ବିଜୟ କରିଥିଲେ ଖିଲମତ୍ତରେ । ରାଏ ସାହେବ ପୁଣି ଛତ୍ର ହଜୁରେ । ସୁଯୋଗରେ ନରେନ୍ଦ୍ର ସାହେବ ଛନ୍ତି । ମୋଃଠାରେ ହୋଇଥାନ୍ତି ପ୍ରସନ୍ନମୁଖ । ୩୬ । ବଂବର୍ତ୍ତୀ ଭଲ ଭଲ ଲୋକ ସଭିରେ । ବକସି ଫଞ୍ଜଯୋଷେ ମହାପାତରେ । ଅଛନ୍ତି କୁମେଦାନ ସରଦାରହିଁ । ସମସ୍ତେ ସୁବେଦାର ଅଛନ୍ତି ତହିଁ । ୩୭ । ଛାମୁକରଣ ନାନା କିଯୋଗୀ ଲୋକେ । ଶିଙ୍ଖିଲୋକ ଖଞ୍ଜଣି ସବୁ ସେବକେ । ଅଛନ୍ତି କୁମେଦାନ ସୁବେଦାରହିଁ । ସମସ୍ତ ସରଦାରେ ଅଛନ୍ତି ତହିଁ । ୪୦ । ଏହିକାଳେ ହଜୁରେ ଭେଟିଲି ମୁହିଁ । ଏ ସମର ତରଙ୍ଗ ଗୀତକୁ ନେଇ । ଆଜ୍ଞା ପ୍ରମାଣେ ପୁଣ୍ଣ ପଢ଼ିଲି ଗୀତ । ଜଣାଇଲି ପୁଣି ମୋ ଦୁଃଖ ସମସ୍ତ ଯେ ॥ ମଣିମା ମନେ ଏହି ହେଉଛି ମୋର । ଶ୍ରୀକରକୁ କହିଲି ସେ ବେଦ-ବହ ଯେ । ଲକ୍ଷ ଲକ୍ଷ ଲୋକଙ୍କୁ କାଟିବ ପଢ଼ । ବରଜନାଥ ବଡ଼ଜେନାକୁ ଛାଡ଼ ଯେ । ୪୧ । ଏମନ୍ତ ଯେବେ କହି ନ ଥାନ୍ତି ପୁଣି ।

Digitized by srujanika@gmail.com

କରୁଣାସିନ୍ଧୁ କ ହୁଅନ୍ତ ଦାରୁଣ ଯେ । ପ୍ରଭୁ ହୋଇ ଯେମନ୍ତ ହେବେ ନିଷ୍ଠୁର । କହିବାକୁ ଯୋଗ୍ୟତା ଅଛୁ କାହାର ଯେ । ୪୩ । ଏତେ ମାତ୍ର ଅପ୍ରବୃତ୍ତ୍ୟ ଥିଲା ମୋହର । ଭେଟି ଅପଣା ଗୁଣ କଲ ଗୋଚର । ଯେ । ଏଥର ସବୁ ଦେବ୍ୟ ଚତ୍ରେ ବିଶ୍ୱର । ଦୟା କରବେ କବା ହେବେ ନିଷ୍ଠୁର ଯେ । ୪୪ । ଏଣିକ ଏହି ଂଗୀତେ ବର୍ଣ୍ଣିବ ତାହା । ଅସିଅଛୁ ମୁଁ କରି ବଡ଼ ଉତ୍ସାହା ଯେ । ମନରେ କରିଅଛୁ ଯେତେ କାମନା । କେ ଦେଇ ପାରିବ କ ପ୍ରଭୁଙ୍କ ବିନା ଯେ । ୪୫ । ଏ ସମରତରଙ୍ଗ ଗୀତ ପ୍ରସାଦେ । ସମ୍ବାଦ ହୋଇବି ମୁଁ ଅତ ପ୍ରମୋଦେ ଯେ । ହେ ମହାରାଜା ଦେବ୍ୟ ଚତ୍ରରେ ହେଉ । ମୋଠାରେ ଦୟା କର କୀରତ ରହୁ ଯେ ।୪୬। ବୁଲି ବୁଲି ଅନେକ ହେଲି ସ୍ତୁକତ । ଅନୁସରଣେ ରହିବାକୁ ମୋ ଚତ୍ ଯେ । ପୁରୁଷାନୁକ୍ରମକୁ ସଙ୍ଗାଳ ହେବ । ସଂସାରେ ପ୍ରଭୁଙ୍କର ଯଶ ରହିବ ଯେ । ୪୭ । ଏ ଅନ୍ତ୍ୟେ ଛନ୍ଦ ସୁଜନେ ନପଢ଼ ଚନ୍ତ । ତକ୍ଷଣେ କୃପା କଲେ ହୋଇ ପ୍ରମୋଦ ଯେ । ଅପଙ୍ଗା କସେ ବ୍ରାହ୍ମୀନଦୀ ତଟରେ । ଗ୍ରାମ ଗୋଟିଏ ନୂଅଗାଁ ଅ ନାମରେ ।୪୮। ପାନ ଠିକରେ ଏହୁ ଗ୍ରାମକୁ ଦେଇ । ପାଞ୍ଚଶ କାହାଣ ନଗଦ ଖଞ୍ଜାହିଁ ଯେ । ହୁକୁମ ଦେଲେ ବଡ଼ ଯେନାଏ ଶୁଣ । ଉଚ୍ଛିଷ୍ଟ ପଦାର୍ଥତ ନୋହେ ଗ୍ରହଣ ଯେ । ୪୯ । ବଂଶାନୁକ୍ରମେ ଗ୍ରାମ ଭୋଗ କରିବ । ଭୂମି ଥିବା-ଯାକ ଏ ବର୍ତ୍ତନ ନେବ ହେ । ଏଥିରେ ଯେବେ କାର୍ଯ୍ୟ ହେବ ଅଚଳ । ଜଣାଣ କଲେ ଦତ୍ତ ହେବ ତତ୍କାଳ ଯେ ।୫୦। ଦୁଇଣ ଠଙ୍କା ପାଠବସ୍ତ୍ର ସହିତ । ଖଙ୍ଗଡ଼ା ଘରୁ ସେକ୍ଷଣି ହେଲା ଦତ୍ତ ଯେ । ପ୍ରମୋଦେ ଘେନ ତାହା ମଜୁରା କରି । ଖାତକରେ ନାହିଁ ଏ ପ୍ରଭୁଙ୍କ ସରି ଯେ ॥ ନବଘନସୁନ୍ଦର ବ୍ରଜକିଶୋର । ନବଗୋପଯୁବତୀ ଚତ୍ତଚଉର ଯେ । ତାଙ୍କ ଶ୍ରୀ ଚରଣରେ ରହିବ ମତ । ବ୍ରଜନାଥର ହେଉ ଏ ସଦ-ଗତ ଯେ । ୫୨ ।

---

ସମ୍ପୂର୍ଣ୍ଣ ।

Digitized by srujanika@gmail.com

# ବିଜ୍ଞାପନ ।



ଅମ୍ଭ ପ୍ରଣୀତ ଓ ପ୍ରକାଶିତ ନିମ୍ନଲିଖିତ ପୁସ୍ତକମାନଂ କଟକ ଦର୍ଘାବଜାର ପ୍ରିଣ୍ଟିଂକମ୍ପାନୀଙ୍କ ଓ ବୁକ ଏଜେଣ୍ଟ ବାବୁ ରାମପ୍ରସନ୍ନ ମୁଖୋପାଧ୍ୟାୟଙ୍କ ଏବଂ ଢେଙ୍କାନାଳ ଗଡ଼ସ୍ଥ ପଣ୍ଡିତ ଶ୍ରୀ ଗଙ୍ଗେଶ୍ୱର ମିଶ୍ରଙ୍କ ପୁସ୍ତକ ଦୋକାନରେ କଣ୍ଟଦନ ସକାଶ ଅଳ୍ପ ମୂଲ୍ୟରେ ବିକ୍ରୟ ହେଉଅଛି । ଡାକରେ ବ ଭେଲ୍ୟୁପେବଲର ପାର୍ଶ୍ୱଲରେ ବହି ନେଲେ ତାଙ୍କ ନିକଟକୁ ଲେଖିବାକୁ ହେବ ।

| | |
|---|---|
| କପିଳାସଯୋଗେନ୍ଦ୍ର | ଟ ୦ ୵ |
| ଜୀବନଚମ୍ପୂ ( ପରିବର୍ଦ୍ଧିତ ସଂସ୍କରଣ ) | ଟ ୦ ୵ ୬ |
| ସଙ୍ଗୀତସାଗର ପ୍ରଥମ ତରଙ୍ଗ | ଟ ୦ ୷ |
| ଏଜନ ଦ୍ୱିତୀୟ ତରଙ୍ଗ | ଟ ୦ ୷ |
| ଏଜନ ତୃତୀୟ ତରଙ୍ଗ | ଟ ୦ ୷ |
| ଏଜନ ଚତୁର୍ଥ ତରଙ୍ଗ | ଟ ୦ ୶ |
| ଏଜନ ପଞ୍ଚମ ତରଙ୍ଗ | ଟ ୦ ୷ |
| ଏଜନ ଷଷ୍ଠ ତରଙ୍ଗ | ଟ ୦ ୷ |
| ସଙ୍ଗୀତ ସର୍ବସାର | ଟ ୦ ୷ |
| ରସଲେଖା ( ଉପେନ୍ଦ୍ର ଭଞ୍ଜ କୃତ ) | ଟ ୦ ୷ |
| ହାରଯାତମାଳା ( ଶ୍ରୀମତୀ ସୁଲକ୍ଷଣାଦେବୀ କୃତ ) | ଟ ୦ । |
| ଜାତୀୟ ସଙ୍ଗୀତ | ଟ ୦ ୳ |
| ବର୍ଷାକାଳ ବର୍ଣ୍ଣନା | ଟ ୦ ୯ ୯ |
| ସମରତରଙ୍ଗ | ଟ ୦ ୳ |

ଶ୍ରୀ ଦାମୋଦର ପଟ୍ଟନାୟକ

Digitized by srujanika@gmail.com